| | |
|---|---|
| Tɔŋduŋṭe<br>ଝିଙ୍କେ | Aṭ-ṭɔŋduŋṭe<br>ଝିଙ୍କାଏ |
| Baṭɔŋṭe<br>ଡରେ | Ab-baṭ-ṭɔŋṭe<br>ଡ଼ରାଏ |
| Ti-iṭe<br>ଧାଏ | Aṭ-ṭi-i-ṭi-iṭe<br>ଧାଆଏ |
| Agi-iṭe<br>ଦେଖେ | Ag-gi-i-gi-iṭe<br>ଦେଖାଏ |
| Gi-i-daṭe<br>ଧୁଏ | Ag-gi-idaṭe<br>ଧୁଆଏ |
| Tɔdeŋṭin<br>ନାଚିଲା | Aṭ-ṭɔdeŋṭin<br>ନଚାଇଲା |
| Dimɔṭba<br>ଶୋଇବା | Ad-dimɔṭba<br>ଶୁଆଇବା |

Bin bin klem puraŋ bar binimleŋ big-gadaŋ jrue jileŋ yaŋgam rupnadeye, prelnaŋ jrueleŋja yunṭichɔy de-e. Subanɔŋ jrue leŋdɔŋ prelnaŋ ṭubde yunṭi babanɔŋ de-e. Ersubanɔŋ jruedɔŋ prelnaŋ ṭubde fubanɔŋ deṭe.

ଭିନ୍ନ ଭିନ୍ନ କାଳ, ପୁରୁଷ ଓ ବିଭକ୍ତିରେ ଅନ୍ୟ କ୍ରିୟାରେ ଯେପରି ରୂପ ହୁଏ, ପ୍ରେରଣାର୍ଥକ କ୍ରିୟାରେ ସେହିପରି ହୁଏ । ସକର୍ମକ କ୍ରିୟାକୁ ପ୍ରେରଣା ଦେଲେ ତାହା ଦ୍ୱିକର୍ମକ ହୁଏ । ଅକର୍ମକ କ୍ରିୟାକୁ ପ୍ରେରଣା ଦେଲେ ତାହା ସକର୍ମକ ହୁଏ ।

## Mijɔn Gɔmtɔn— Jrel

## ଏକାଦଶ ପାଠ— ବିଶେଷଣ

Dana~ṭmɔr sɔb-bi-i~ mɔndra aṭiyupairɔn ṭubeŋ. Kɔn birleŋ mɔndraŋ bɔyna jrel pajadɔn 'dana~ṭ' kɔn pajadɔn mɔndraŋdɔŋ bɔynaŋ gna~ŋ puŋgiŋ ṭubɔn.

Suŋṭar ṭarɔn gi-ile. Amadɔn jarɔm deyɔn. Kɔn birleŋ suŋṭar pajadɔn ṭarbaŋ dɔŋ bɔyna gna~ŋ puŋgiŋ ṭubɔn. Agurɔn-na padasa mnaṭe. Kɔn birleŋ 'agurɔn' kɔn pajadɔn padasaŋdɔŋ abilnaŋ puŋgiŋ ṭubdɔkuŋ. 'Ɔbɔl' mnaŋ kni pajadɔn padasaŋdɔŋ gɔna~ŋ puŋgiŋ ṭubdɔku gɔna~ŋ puŋgiŋ ṭubdɔku.

ଦୟାଳୁ ଲୋକ ସମସ୍ତଙ୍କର ଉପକାର କରେ । ଏହି ବାକ୍ୟରେ 'ଲୋକ'ର ବିଶେଷଣ ପଦ 'ଦୟାଳୁ । ଏହା ଲୋକର ଏକ ଗୁଣକୁ ବୁଝାଉଛି ।

ସୁନ୍ଦର ଫୁଲ ଦେଖି ଆଖି ଖୋସି ହୋଇଯାଏ । ଏହି ବାକ୍ୟରେ 'ସୁନ୍ଦର' ପଦ ଫୁଲର ଗୋଟିଏ ଗୁଣକୁ ବୁଝାଏ । ପାଚିଲା ପଣସ ମଧୁର । ଏହି ବାକ୍ୟରେ 'ପାଚିଲା' ଏହି ପଦ ପଣସର ଅବସ୍ଥାକୁ ବୁଝାଏ ଏବଂ 'ମଧୁର' ଏହି ପଦ ପଣସର ଗୁଣକୁ ପ୍ରକାଶ କରେ ।

Kaṭ-ṭi kadumarɔn dɔŋ gnarɔn ṭiya. Kɔn birleŋ 'kadu' kɔn pajadɔn mandraŋdɔŋ abilnaŋ puŋgiŋ ṭubdɔku.

Gulji dinnaleŋ bɔyṭar deṭe. Teṭne 'gulji' kɔn padɔn dinnaŋdɔŋ sɔnkliŋ puŋgiŋ ṭubṭe. Bɔpuṭ-ṭi buṭ srɔbaleŋ srɔŋ srɔŋ gusɔr dele. Kɔn birleŋ bɔpuṭ-ṭi buṭ srɔbaŋ palmɔṭ puŋgiŋ ṭubṭe. Lɔkkaŋ nidɔn birleŋji dana~ṭ, suŋṭar, agurɔn, mnaŋ, kaduŋ, gulji, bɔpuṭ-ṭibuṭ kniji jrel pajadɔn.

ସେହି ଅନ୍ଧ ଲୋକକୁ ଭିକ୍ଷା ଦିଅ । ଏହି ବାକ୍ୟରେ 'ଅନ୍ଧ' ଏହି ପଦ ଲୋକର ଅବସ୍ଥାକୁ ବୁଝାଏ ।

ସାତ ଦିନରେ ଏକ ସପ୍ତାହ ହୁଏ । ଏଠାରେ 'ସାତ' ଏହି ପଦ ଦିନର ସଂଖ୍ୟାକୁ ବୁଝାଏ । ଫୁଟିଏ ବୃଷ୍ଟି ହେବା ବଳରେ ଧାନ ବୁଆ ହେଲା । ଏହି ବାକ୍ୟରେ 'ଫୁଟିଏ ବୃଷ୍ଟି'

ବଳର ପରମାଣକୁ ବୁଝାଏ । ଉପରେ ଲେଖା ବାକ୍ୟ ଗୁଡ଼ିକରେ ଦୟାଳୁ, ସୁନ୍ଦର, ପାଚିଲା, ମଧୁର, ଅନ୍ଧ, ସାତ, ଫୁଟିଏ ଦୁଣା ଏଗୁଡ଼ିକ ସବୁ ବଶେଷଣ ପଦ ।

Bimmaŋ sigduŋ iydum ṭai. Kni birleŋ sigduŋ—kɔn pajadɔn ɔiṭan~n-na bara gɔna~ puŋgiŋ sɔbjaŋdɔku. Teṭne sigduŋ jrel pajadɔn.

Ra-aŋ lirɔn yudumṭeŋ. Kɔn birleŋ 'lirɔn' kɔn pajadɔn yunabara gɔna~ŋ puŋgiŋ ṭubdɔku. Tiṭne lirɔn jrel pajadɔn. Jɔsṭerɔm alaŋ mnaŋ deyɔn. Kɔn berleŋ 'mnaŋ' kɔn pajadɔn baṭ-ṭuleŋ aeŋ gɔna~ŋ puŋgiŋ. puṭneṭeŋ (alan) kɔn pajadɔn aniŋdɔŋ paṭmarɔṭnaŋ galɔmṭe. Teṭne ɔṭirsayɔn jrel pajadɔn. Aiŋna pajadɔn bin pajadɔn bɔṭ-ṭuleŋ gani-i jɔndraṭ-ṭiŋ, prarɔn barɔn gɔna~ŋ parbɔrɔṭia gɔɔna~ŋ ab bilnaŋ sɔŋlkiŋ bar pɔlmɔṭ puŋgiŋ ṭubɔn, yunṭaŋ jrel pajadɔn ap-puŋ deṭe.

ରମା ଶିଘ୍ର ଆସୁଅଛି । ଏହି ବାକ୍ୟରେ 'ଶିଘ୍ର' — 'ଏହି ପଦ ଆସିବା କାମର ଗୁଣକୁ ବୁଝାଏ । ଏଠାରେ 'ଶିଘ୍ର' ବଶେଷଣ ପଦ ।

ହାତୀ ଧୀରେ ଝୁଲେ । ଏହି ବାକ୍ୟରେ 'ଧୀରେ' ଏହି ପଦ ଝୁଲିବା ଗୁଣକୁ ବୁଝାଉ ଅଛି । ଏଠାରେ 'ଧୀରେ' ବଶେଷଣ ପଦ । ଜ୍ୟେଷ୍ଠ ମଧୁ ଅତ୍ୟନ୍ତ ମଧୁର ହୁଏ । ଏହି ବାକ୍ୟରେ 'ମଧୁର' ଏହି ପଦଟି ଦ୍ୱାରା ଯେଉଁ ଗୁଣକୁ ବୁଝାଏ, 'ଅତ୍ୟନ୍ତ' ଏହି ପଦଟି ତାହାର ପରମାଣକୁ ବୁଝାଏ । ଏଠାରେ ଅତ୍ୟନ୍ତ ବଶେଷଣ ପଦ । ଯେଉଁ ପଦ ଦ୍ୱାରା ଦେଖାଯାଉଥିବା ଜିନିଷ, ପ୍ରାଣୀ ଇତ୍ୟାଦିର ଗୁଣ, ଅବସ୍ଥା, ସଂଖ୍ୟା ଓ ପରମାଣକୁ ବୁଝାଏ, ତାହାକୁ ବଶେଷଣ ପଦ କୁହାଯାଏ ।

Dana~ṭmarɔn sɔb-bi-i~ mɔndradɔŋ 'upɔpyarɔn' ṭuble. Teṭne dana~ ṭ kɔn pajadɔn mɔndraŋ kɔn jarbilṭe gɔn~ dɔŋ. Talaiba marɔnji asudum gaṭji. Teṭne 'ṭalaiba' kɔn pajadɔn mandraŋji klem jaribilṭe jrel.

Aŋ mɔñen yagiṭɔŋka ṭi-i~ṭin. Teṭne 'Yagi' kɔn ɔajadɔn ṭɔŋkaŋ kɔn jaribilṭe jrel deṭ. 'Pɔmda' udaleŋ ɔddiṭ gu-urle. Teṭne 'Pɔmda' kɔn pajadɔn udaleŋ ɔludɔŋ kni jaribilṭe jrel.

ଦୟାଳୁ ଲୋକ ସବୁ ଲୋକଙ୍କର ଉପକାର କରେ । ଏଠାରେ 'ଦୟାଳୁ' ଏହି ପଦ ଲୋକ' ଏହି ବିଶେଷ୍ୟର ଗୁଣ ଅଟେ । ବୁଢ଼ା ଲୋକମାନେ ଅଳ୍ପ ଖାଆନ୍ତି । ଏଠାରେ 'ବୁଢ଼ା' ଏହି ପଦ 'ଲୋକମାନେ' ବିଶେଷ୍ୟର ବିଶେଷଣ ।

ଆଂ ମୋତେ ଦଶ ଟଙ୍କା ଦେଲା । ଏଠାରେ 'ଦଶ' ଏହି ପଦ 'ଟଙ୍କା' ଏହି ବିଶେଷ୍ୟର ବିଶେଷଣ ହୁଏ । ଆମ୍ବ ଫଳ ଗଛରେ ଅଧିକ ପାଚିଲା । ଏଠାରେ ଫଳ ଏହି ପଦ 'ଗଛରେ' ବିଶେଷ୍ୟର ବିଶେଷଣ ।

Ra-aŋ lirɔn yuṭine. Tiṭne 'lirɔn' kɔn pajadɔn yuṭine. Kni jrue jrel. 'Jɔsṭerɔm' ɔṭisayŋ mnaŋdeṭe. Kɔn jaribilṭe jrel deṭe. Siŋgarɔn aṭluŋ fiŋgirɔn laŋ suŋṭar deṭ. Teṭne 'laŋ' kɔn pajadɔn 'suŋṭar' kni jaribilṭe jrel deṭe.

ହାତୀ ଧୀରେ ଚାଲେ । ଏଠାରେ 'ଧୀରେ' ଏହି ପଦ 'ଚାଲେ' ଏହି କ୍ରିୟାର ବିଶେଷଣ । କୋଷ୍ଠ ମଧୁ ଅତ୍ୟନ୍ତ ମଧୁର ହୁଏ । ଏହା ବିଶେଷ୍ୟର ବିଶେଷଣ ହୁଏ । ସିଂହଠାରୁ ସିଂହୀ ଅଧିକ ସୁନ୍ଦର ଅଟେ । ଏଠାରେ 'ଅଧିକ' ଏହି ପଦ 'ସୁନ୍ଦର' ଏହି ବିଶେଷଣର ବିଶେଷଣ ଅଟେ ।

Jrel yagi praŋ, niŋji— (1) Jaribilṭe Jrel, (2) Jrueṭe Jrel, (3) Jrelṭe Jrel.

Aeŋ jrel pajadɔn jaribil pajadɔn bɔṭ-ṭuleŋ gi-iṭaŋ prarɔn, jɔndraṭiŋ, gɔñy baraṭin, gy~, abilna, sɔnlɔki bar palmɔṭ galɔmṭe, naniŋdɔŋ jaribilṭe jrel ap-pu? deṭ. Aiŋ jaribil pajadɔn aiŋgɔŋ jrue barṭi gɔñŋ, pal palmɔṭ bar abilna puŋgiŋ ṭube, kɔṭ dɔŋ jrue jrel pudɔŋde. Jiŋ

jrel anɔŋ jrel bɔṭ-ṭuleŋ sugi-iṭ gayŋ pra bɔlneṭin palmɔṭ glame, ṭadɔŋ jaril bilṭe jrel puŋde.

ବିଶେଷଣ ତିନି ପ୍ରକାର, ଯଥା— (୧) ବିଶେଷ୍ୟର ବିଶେଷଣ, (୨) କ୍ରିୟାର ବିଶେଷଣ ଓ (୩) ବିଶେଷଣର ବିଶେଷଣ । ଯେଉଁ ବିଶେଷଣ ପଦ ବିଶେଷ୍ୟ ପଦ ସାହାଯ୍ୟରେ ଦେଖା-ଯାଉଥିବା ପ୍ରାଣୀ, ଜିନିଷ, ଗୁଣର କାମ କରେ, ଗୁଣ, ଅବସ୍ଥା, ସଂଖ୍ୟା ଆଉ ପରିମାଣ ବୁଝାଏ, ତାହାକୁ ବିଶେଷ୍ୟର ବିଶେଷଣ କୁହାଯାଏ । ଯେଉଁ ବିଶେଷ୍ୟ ପଦ କୌଣସି କ୍ରିୟାର ଗୁଣ, ପରିମାଣ ଆଉ ଅବସ୍ଥା ପ୍ରକାଶ କରେ, ତାହାକୁ କ୍ରିୟା ବିଶେଷଣ କହନ୍ତି । ଯେଉଁ ବିଶେଷଣ ଅନ୍ୟ ବିଶେଷଣ ଦ୍ୱାରା ସୂଚିତ ଗୁଣ, ଅବସ୍ଥା ଓ ପରିମାଣ ବୁଝାଏ, ତାକୁ ବିଶେଷଣର ବିଶେଷଣ କୁହାଯାଏ ।

## Mui Gɔmṭɔn— Aneyay

## ଦ୍ୱାଦଶ ପାଠ— ଅବ୍ୟୟ

Jaribil, sɔrpinum, jru ɔnaŋ jreldɔŋ achuṭ barɔn jin pajadɔn dɔku aŋṭiji aneyay. Ɔnaŋ, ɔibɔm, pilniṭ krai, barɔn, barɔnna, kɔnji sujuina aneyay. Kɔlɔṭŋ manṭɔrɔn maṭaṭ, ɔŋcheṭ binjulna aneyay. Aha, ɔhɔ, ɔ?, ay kɔnji baŋkleda gi-iṭaŋ neyay. Dɔŋ, leŋ, ṭeŋ, ṭɔlun, bɔṭ-ṭun, parbɔlnaṭŋ dɔŋ binim sɔbrubɔn aneyay. Tin (kaṭ-ṭi), ṭɔ jiṭ, ji, praŋ gijɔn aneyay. Ha, sina, ṭɔ, niŋ, abɔlsai, kniji nisai aneyay. Kɔn achuṭ barɔn dijiŋde puraŋ aneyay dɔku.

ବିଶେଷ୍ୟ, ସର୍ବନାମ, କ୍ରିୟା ଓ ବିଶେଷଣକୁ ଛାଡ଼ି ଆହୁରି ପଦ ଅଛି ଯାହାକୁ ଅବ୍ୟୟ କୁହାଯାଏ । ଓ, ଏବଂ, ପୁଣି, ଆଉ, ଆହୁରି ଏଗୁଡ଼ିକ ସଂଯୋଜକ ଅବ୍ୟୟ । କିନ୍ତୁ, ମାତ୍ର, ନଚେତ୍ ବିଯୋଜକ ଅବ୍ୟୟ । ଆହା, ଅହ, ଅ, ହାୟ ଏଗୁଡ଼ିକ ବିସ୍ମୟାଦି ସୂଚକ ଅବ୍ୟୟ । କୁ, ରେ, ର, ମଧ୍ୟ, ଦ୍ୱାରା, ପରବର୍ତ୍ତୀ ଇତ୍ୟାଦି ବିଭକ୍ତି ସ୍ୱରୂପ ଅବ୍ୟୟ । ସେହୁ, ତ, ଠିକ, ଟି,

ଇତ୍ୟାଦି ପ୍ରସୂଚକ ଅବ୍ୟୟ । ହଁ, ସିନା, ତ, ତାକୁ, ଅବଶ୍ୟ, ଏହିପରି ନିଶ୍ଚୟ ବାଚକ ଅବ୍ୟୟ । ଏସବୁ ଛଡ଼ା ଆହୁରି ଅନେକ ପ୍ରକାର ଅବ୍ୟୟ ଅଛି ।

## Ber Bar ɔŋyay

## ବାକ୍ୟର ଅନ୍ୱୟ

Bir ṭraŋleŋ bɔyna pajadɔn sutni anirbɔyna pajadɔnṭi sɔmmɔi dumdɔŋ ɔŋyay puŋde. Baguleŋ asuleŋ deŋ urna pajadɔnleŋ bir ergadel deṭ. Kni bɔṭ-ṭuleŋ sluŋ bɔyna pajadɔnṭe nanum ṭubeŋ. ɔpalṭun nanum jrue. Bilnaŋ dimɔṭneṭe. Teṭne 'Bilnaŋ' ṭubeŋ 'dimɔṭneṭe' jrue.

ବାକ୍ୟ ମଧ୍ୟରେ ଗୋଟିଏ ପଦ ସହିତ ଅନ୍ୟ ଗୋଟିଏ ପଦର ସମ୍ବନ୍ଧକୁ ଅନ୍ୱୟ କୁହାଯାଏ । ଦୁଇରୁ କମ୍ ପଦରେ ବାକ୍ୟ ହୁଏନା । ଏହା ମଧ୍ୟରୁ ଗୋଟିଏ ପଦର ନାମ କର୍ତ୍ତା ଅପରଟିର ନାମ କ୍ରିୟା । ବିଲ୍‌ନାଂ ଶୋଇଲା । ଏଠାରେ 'ବିଲ୍‌ନାଂ' କର୍ତ୍ତା, 'ଶୋଇଲା' କ୍ରିୟା ।

Turubɔn gurle. Kni birle, ṭurubɔn ṭubeŋ, gurle jrue. 'Iyai' kni birleŋ 'ambiŋ' kɔnmɔn pajadɔn dele dɔku. Iya jrue pajadɔn birleŋ pdadŋ ɔŋsai jrue. Jrue pajadɔn sɔndiŋi ṭubeŋ ɔnaŋ ɔnnir ṭnal baṭ-ṭin abɔy jrel jrelṭe ɔŋya dakae ṭube sɔn-niə ninṭi jarelɔṭ aybmɔn pajadɔnṭi purbari-i sŋmaidum pajadɔnṭi ɔŋniyay dɔkye.

ମେଘ ବର୍ଷିଲା । ଏହି ବାକ୍ୟରେ ମେଘ କର୍ତ୍ତା, ବର୍ଷିଲା କ୍ରିୟା । 'ଆସ' ଏହି ବାକ୍ୟରେ 'ତୁମେ' କର୍ତ୍ତା ପଦ ହୋଇଅଛି । ଆସ କ୍ରିୟା ପଦଟି ବାକ୍ୟରେ ଅଂଶ କ୍ରିୟା । ଏହିପରି କ୍ରିୟା ଶବ୍ଦଟିର କର୍ତ୍ତା ସହିତ ଓ କାରକ ଦ୍ୱାରା ବାକ୍ୟର ଅନ୍ୟ ବିଶେଷଣ ପଦ ସହ ସମ୍ବନ୍ଧ ରହେ । କର୍ତ୍ତା ବା ବିଶେଷ୍ୟ ପଦଟିର ଅନ୍ୟାନ୍ୟ ପଦମାନଙ୍କ ସହ ପୂର୍ବବର୍ତ୍ତୀ ସମ୍ବନ୍ଧକୁ ନେଇ ଅନ୍ୱୟ କରାଯାଏ ।

Rajaŋji aṭalaiba ra-a ra-agudŋdŋ sluŋ al baŋ lirɔn lirɔn ñadum ni-iṭe. Kɔn bileŋ ra-aŋ ɔbɔl ñadum ni-iṭe. Kɔn bagun pɔdnum aŋsai. Ra-aŋ ṭubeŋ, ñadumni-i jrue. Ra-aŋ kɔn mani pajadɔn ni-i jrel ṭalaiba ɔbɔl sammaidum pajadɔn. 'Rajaŋjaṭe' kɔn bagu pajadɔnṭe ɔŋyay dɔku. ñadumi-i jrue pajadɔn ; ŋn-ni-i ṭubeŋ, ṭnal ra-aŋ, apde ṭnal ra-a gluŋ slɔŋ banɔŋ ṭnal albaŋ, ɔbɔl, jrue jrel, 'lirɔn lirɔn', kɔn pajadɔnji ɔŋniyay dɔku.

ରାଜାଙ୍କ ବୁଢ଼ା ହାତୀ ହାତୀଶାଳରୁ ନଦୀ ଆଡ଼କୁ ଧୀରେ ଧୀରେ ଚାଲି ଯାଉଛି । ଏହି ବାକ୍ୟରେ ହାତୀର ଅବସ୍ଥା, ଚାଲି ଯାଉଛି, ଏହି ଦୁଇଟି (ସର୍ବନାମ) ଅଂଶରେ ହାତୀ କର୍ତ୍ତା, ଚାଲି ଯାଉଛି କ୍ରିୟା । ହାତୀ ଏହି ପଦଟିର ବିଶେଷଣ ବୁଢ଼ା ଅବସ୍ଥା । 'ରାଜାଙ୍କର' ଏହି ପଦର ଅନ୍ୱୟ ଅଛି । ଚାଲିଯାଉଛି କ୍ରିୟା ପଦ ସହିତ କର୍ତ୍ତାକାରକ ହାତୀ, ଅପାଦାନ କାରକ ହାତୀଶାଳଠାରୁ, କର୍ମ କାରକ ନଦୀକୁ ଓ କ୍ରିୟା ବିଶେଷଣ 'ଧୀରେ ଧୀରେ' ଏହି ପଦ ଗୁଡ଼ିକର ଅନ୍ୱୟ ଅଛି ।



# ବର୍ଣ୍ଣମାଳା
# ALPHABETS

ମାନବ ସମାଜରେ ଭାବର ପରିପ୍ରକାଶ ପାଇଁ ଭାଷାର ସୃଷ୍ଟି ଓ ବ୍ୟବହାର ହୋଇ ଆସିଛି । ସେହିପରି ଭାଷାର ପରିପ୍ରକାଶ ପାଇଁ ବର୍ଣ୍ଣ ବା ଅକ୍ଷରର ସୃଷ୍ଟି ହୋଇଛି । ତେବେ ଭାଷାର ମୌଖିକ ପରିପ୍ରକାଶ ସାଙ୍ଗକୁ ଲିଖିତ ପରିପ୍ରକାଶ ବା ଲିପିର ପ୍ରଚଳନ ସମସ୍ତ ମାନବ ସମାଜ ବା ଭାଷା ଗୋଷ୍ଠୀ ମଧ୍ୟରେ ଦେଖାଯାଇ ନ ଥାଏ । ଏକ ନିର୍ଦ୍ଦିଷ୍ଟ ଆକୃତି ବିଶିଷ୍ଟ ଅକ୍ଷର ବା ବର୍ଣ୍ଣକୁ ନେଇ ଲିପିର ଆତ୍ମପ୍ରକାଶ ହୋଇଥାଏ । ସାମାଜିକ ଓ ସାଂସ୍କୃତିକ ଭେଦରେ ଭାଷାର ଭିନ୍ନତା ସାଙ୍ଗକୁ ଲିପିର ଭିନ୍ନତା ମଧ୍ୟ ଅନୁରୂପ ପରିଦୃଷ୍ଟ ହୁଏ । ଭିନ୍ନଭିନ୍ନ ଭାଷାଗୋଷ୍ଠୀ ମଧ୍ୟରେ ଅକ୍ଷର ବା ବର୍ଣ୍ଣମାନଙ୍କର ସଂଖ୍ୟା ଓ ଗଠନରେ ତାରତମ୍ୟ ଦେଖା ଯାଇଥାଏ । ସେହିପରି ଅକ୍ଷରମାନଙ୍କର ସଂଯୋଜନାରେ ଯେଉଁ ଶବ୍ଦମାନଙ୍କର ସୃଷ୍ଟି ହୁଏ ଓ ସେମାନଙ୍କର ସମଷ୍ଟିରେ ଯେଉଁ ଭାବବୋଧକ ବାକ୍ୟର ସୃଷ୍ଟି ହୁଏ, ସେଥିରେ ମଧ୍ୟ ଭାଷାଗୋଷ୍ଠୀ ଭେଦରେ ତାରତମ୍ୟ ପରିଲକ୍ଷିତ ହୁଏ । ଅକ୍ଷର, ଶବ୍ଦ ଓ ବାକ୍ୟର ଗଠନ ସାଙ୍ଗକୁ ଅକ୍ଷର ଗୁଡ଼ିକର ଆକୃତି ଓ ଉଚ୍ଚାରଣରେ ମଧ୍ୟ ଅନୁରୂପ ବିଭିନ୍ନତା ପରିଦୃଷ୍ଟ ହୁଏ । ତେବେ ଯାହା ପୂର୍ବରୁ କୁହାଯାଇଛି, ସମସ୍ତ ପ୍ରକାର ମାନବ ଗୋଷ୍ଠୀ ମଧ୍ୟରେ ବର୍ଣ୍ଣ ବା ଲିଖିତ ଭାଷାର ବ୍ୟବହାର ଦେଖାଯାଏ ନାହିଁ । କେତେକ ଆଦିମ ସମାଜରେ ଭାଷାର ବ୍ୟବହାର କେବଳ ମୌଖିକ ଭାବରେ ମଧ୍ୟ ପ୍ରଚଳିତ । ନିର୍ଦ୍ଦିଷ୍ଟ ଲିପି ନ ଥିଲେ ବି ଏସବୁ ଭାଷାରେ ବର୍ଣ୍ଣ ସଂଯୋଜନା ଓ ଉଚ୍ଚାରଣ ଏକ ନିର୍ଦ୍ଦିଷ୍ଟ ବ୍ୟାକରଣଗତ ନିୟମରେ ପରିଚାଳିତ ହୋଇଥାଏ । ଏଭଳି ଭାଷା-ମାନଙ୍କ ମଧ୍ୟରେ ଓଡ଼ିଶାର 'ସଉରା ଭାଷା' ଅନ୍ୟତମ । ଓଡ଼ିଶାର ଅନ୍ୟାନ୍ୟ ଆଦିମ ଗୋଷ୍ଠୀ ମାନଙ୍କ ଭଳି ସଉରାମାନଙ୍କର ଏକ ନିର୍ଦ୍ଦିଷ୍ଟ ଲିପି ପୂର୍ବରୁ ନ ଥିଲେ ମଧ୍ୟ, ଚିନ୍ତାଶୀଳ ଓ ବିଜ୍ଞ ମାଙ୍ଗେଇ ଗମାଙ୍ଗୋଙ୍କର ପ୍ରଚେଷ୍ଟା ବଳରେ ସଉରା ଭାଷାର ଲିପି ୧୯୩୦ ଦଶକରୁ ଆତ୍ମପ୍ରକାଶ କରିଛି । ଏହାକୁ "ସୋରାଂ ସୋମ୍ପେ" (ସୋରାଙ୍ଗ ସୋମପେଙ୍ଗ) ନାମରେ ନାମିତ କରାଯାଇଛି । ଏହି ଲିପି ସମଗ୍ର ସଉରା ସମାଜ ପାଇଁ ଅଭିପ୍ରେତ ହୋଇଥିଲେ ହେଁ କେବଳ 'ଶୁଦ୍ଧ ସଉରା' ମାନେ ଏହାକୁ ଅଦ୍ୟାବଧି ଗ୍ରହଣ କରି ପାରିଛନ୍ତି । ସଉରା ଜନଜାତିର ଆଦିମ ଗୋଷ୍ଠୀ ଭାବରେ ପରିଚିତ 'ଲାଞ୍ଜିଆ ସଉରା'ମାନେ ପୂର୍ବପରି ମୌଖିକ ଭାଷା ବ୍ୟବହାର କରୁଥିଲେ ହେଁ ଏବଂ ଉଭୟଙ୍କ ଭାଷା ଓ ସଂସ୍କୃତିରେ କିଛିଟା ତାରତମ୍ୟ ପରିଲକ୍ଷିତ ହେଉଥିଲେ ହେଁ, ଶିକ୍ଷାଦାନ ମାଧ୍ୟମରେ ଲାଞ୍ଜିଆ ସଉରାମାନଙ୍କ ମଧ୍ୟରେ ଏହାର ପ୍ରସାର ପାଇଁ ଉଦ୍ୟମ ଓ ଚେଷ୍ଟା ଚାଲୁ ରହିଛି । ଉଭୟ ଗୋଷ୍ଠୀ ପାଇଁ ଅଭିପ୍ରେତ ହୋଇଥିବା ଦୃଷ୍ଟିରୁ, ସଉରା ବର୍ଣ୍ଣମାଳା କ୍ରମରେ ଏହି ନୂତନ ଭାବରେ ଉଦ୍ଭାବିତ ବର୍ଣ୍ଣମାଳା ବା "ସୋରାଙ୍ଗ ସୋମ୍ପେଙ୍ଗ" ଏଠାରେ ଅବତାରଣା କରାଯାଉଛି ।

ନୂତନ ଭାବରେ ଉଦ୍ଭାବିତ ସଉରା ଲିପି (ସୋରାଙ୍ଗ ସୋମ୍ପେଙ୍ଗ)ରେ ମୋଟ ୨୪ଟି ବର୍ଣ୍ଣ ବା ଅକ୍ଷର ରହିଛି । ସଉରା ଭାଷାର ପ୍ରଚଳିତ ଉଚ୍ଚାରଣ ଓ ଶବ୍ଦ ସଂଯୋଜନାକୁ ନେଇ

ବର୍ଣ୍ଣଗୁଡ଼ିକୁ ସୃଷ୍ଟି କରାଯାଇଛି । ଓଡ଼ିଆ ଭାଷା ଓ ଅନ୍ୟାନ୍ୟ ଭାଷା ଭଳି ଏଥିରେ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣର ବିଭାଗୀକରଣ ଓ ବର୍ଗର ରହିଛି । ସାଧାରଣତଃ ଯେଉଁ ବର୍ଣ୍ଣଗୁଡ଼ିକ ଅନ୍ୟ ବର୍ଣ୍ଣର ସାହାଯ୍ୟ ବ୍ୟତୀତ ଉଚ୍ଚାରିତ ହୋଇ ପାରନ୍ତି, ସେଗୁଡ଼ିକୁ ସ୍ୱରବର୍ଣ୍ଣ କୁହାଯାଇ ଥାଏ ଏବଂ ଯେଉଁ ସବୁ ବର୍ଣ୍ଣ ସ୍ୱରବର୍ଣ୍ଣର ସାହାଯ୍ୟ ବ୍ୟତୀତ ଉଚ୍ଚାରିତ ହୋଇପାରନ୍ତି ନାହିଁ ସେ ସବୁ ବ୍ୟଞ୍ଜନ ବର୍ଣ୍ଣରୂପେ ପରିଚିତ । ସଉରା ଲିପିରେ ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନ ବର୍ଣ୍ଣ ସଂରଚନାରେ ଏକ ବିଶେଷତ୍ୱ ପରିଲକ୍ଷିତ ହୁଏ । ଓଡ଼ିଆ ଭାଷାରେ ବର୍ଣ୍ଣଗୁଡ଼ିକର କ୍ରମଭଳି ଏଥିରେ ସେପରି କ୍ରମ ଆଦୌ ପରିଦୃଷ୍ଟ ହୁଏନାହିଁ । ନିର୍ଦ୍ଦିଷ୍ଟ ଆବଶ୍ୟକତାକୁ ନେଇ ସଉରା ଲିପି ଏହିପରି ଆଉ କେତେକ ସ୍ୱାତନ୍ତ୍ର୍ୟ ମଧ୍ୟ ଦେଖାଯାଇଥାଏ । ଓଡ଼ିଆ ବର୍ଣ୍ଣମାଳା ଭଳି ଏଥିରେ ସ୍ୱରବର୍ଣ୍ଣମାନଙ୍କର ସ୍ଥାନ ବ୍ୟଞ୍ଜନ ବର୍ଣ୍ଣ ପୂର୍ବରୁ ରଖାଯାଇ ନାହିଁ । ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକ ଆବଶ୍ୟକତା ଦୃଷ୍ଟିରୁ ସ୍ୱରବର୍ଣ୍ଣ ପୂର୍ବରୁ ପ୍ରଦାନ କରାଯାଇଛି । ଏଗୁଡ଼ିକର କ୍ରମ ହେଉଛି—ସା, ତା, ବା, ଚା, ଡ଼ା, ଗା, ମା, ଙ୍ଗା, ଲ, ନା, ଓ୍ୟା, ପା, ଯ୍ୟ/, ରା, ହା, କା ଜା ଏବଂ ଞା । ଏହିପରି ୧୮ଟି ବ୍ୟଞ୍ଜନ ବର୍ଣ୍ଣ ପରେ ୬ଟି ସ୍ୱରବର୍ଣ୍ଣ ପ୍ରଦାନ କରାଯାଇଛି । ଏଗୁଡ଼ିକର କ୍ରମ ହେଉଛି ଆ, ଏ, ଇ, ଉ, ଅ ଏବଂ ଐ । ପରିଶେଷରେ ଏକ ସ୍ୱତନ୍ତ୍ର ବର୍ଣ୍ଣର ସୂଚନା ଦିଆଯାଇଛି । ଏହାକୁ 'ମ୍ରାଇ' ବୋଲି କୁହାଯାଇଛି । ତେବେ ଏହାକୁ ବର୍ଣ୍ଣମାଳା ମଧ୍ୟରେ ଅନ୍ତର୍ଭୁକ୍ତ କରି ନ ଯାଇ ସମୁଦାୟ ୨୪ଟି ବର୍ଣ୍ଣ ବୋଲି କୁହାଯାଇଥାଏ ।

ସଉରା ବର୍ଣ୍ଣମାଳାର ବ୍ୟଞ୍ଜନ ବର୍ଣ୍ଣରେ ଯୁକ୍ତବର୍ଣ୍ଣ ଓ ଫଳାଯୁକ୍ତ ବର୍ଣ୍ଣ ମଧ୍ୟ ଦେଖାଯାଇଥାଏ । ଦୁଇ ବା ତତୋଧିକ ବ୍ୟଞ୍ଜନବର୍ଣ୍ଣ ମିଳିତ ହୋଇ ଗୋଟିଏ ବ୍ୟଞ୍ଜନବର୍ଣ୍ଣ ହେଲେ, ତାହାକୁ ଯୁକ୍ତ ବର୍ଣ୍ଣ କୁହାଯାଇଥାଏ । ଏଠାରେ ସଉରା ବ୍ୟଞ୍ଜନ ବର୍ଣ୍ଣମାଳାରେ 'ଙ୍ଗା' (ଙ + ଗା) ଏକ ଯୁକ୍ତ ବର୍ଣ୍ଣ । ସେହିପରି 'ଓ୍ୱା' ବା 'ଓ୍ୟା' ମଧ୍ୟ ସ୍ୱରବର୍ଣ୍ଣ 'ଓ' ସହ 'ବ' ଫଳା-ଯୁକ୍ତ (ବା 'ଯ' ଫଳାଯୁକ୍ତ) ହୋଇ ଗଠିତ ହୋଇଥାଏ ।

ସଉରା ଭାଷାର ୬ଟି ସ୍ୱରବର୍ଣ୍ଣମାନଙ୍କ ମଧ୍ୟରୁ ୪ଟି ବର୍ଣ୍ଣ (ଯଥା:—ଏ, ଇ, ଉ ଏବଂ ଅ) ହ୍ରସ୍ୱ ସ୍ୱର ବିଶିଷ୍ଟ ଓ ୨ଟି ବର୍ଣ୍ଣ (ଯଥା :—ଆ ଏବଂ ଐ) ଦୀର୍ଘସ୍ୱର ବିଶିଷ୍ଟ ଅଟନ୍ତି । ସଉରା ଲିପିର ବର୍ଣ୍ଣମାଳାରେ ଆଉ ଏକ ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ । ଏଥିରେ ପ୍ରତ୍ୟେକ ବର୍ଣ୍ଣମାନଙ୍କୁ 'ଆ' କାର ଯୁକ୍ତ କରି ଉଚ୍ଚାରଣ କରାଯାଏ । ଏହା ସମ୍ଭବତଃ ବହୁକାଳରୁ ପ୍ରଚଳିତ ସଉରା ଶବ୍ଦ ଗଠନ ବା ସଂଯୋଜନା ପ୍ରତି ଦୃଷ୍ଟି ରଖି କରାଯାଇଛି । ବ୍ୟବହାରିକ ଦୃଷ୍ଟିରୁ ମଧ୍ୟ ସଉରା ବ୍ୟଞ୍ଜନ ବର୍ଣ୍ଣମାନଙ୍କରେ ଓଡ଼ିଆ ବ୍ୟଞ୍ଜନ ବର୍ଣ୍ଣର—ଖ, ଘ, ଛ, ଝ, ଟ, ଠ, ଢ଼, ଣ, ଥ, ଦ, ଧ, ଫ, ଭ, ଶ, ଷ ଇତ୍ୟାଦି ନ ଥିବାର ଦେଖାଯାଏ । ସେହିପରି ଓଡ଼ିଆ ସ୍ୱରବର୍ଣ୍ଣର—ଈ, ଊ, ଋ, ଌ, ଓ ଏବଂ ଔ ମଧ୍ୟ ସଉରା ସ୍ୱରବର୍ଣ୍ଣରେ ନାହିଁ । ଓଡ଼ିଆ ବର୍ଣ୍ଣମାଳା ପରି ସଉରା ବର୍ଣ୍ଣମାଳାରେ କ୍ରମ ଅନୁସାରେ ପ୍ରଥମେ ସ୍ୱରବର୍ଣ୍ଣ ଓ ତା ପରେ ବ୍ୟଞ୍ଜନବର୍ଣ୍ଣ ରହି ନ ଥିବାର ପୂର୍ବରୁ କୁହାଯାଇଛି । ସଉରା ଭାଷାର ସୁଦାୟୁାଦମାନଙ୍କ ମତରେ ଏସବୁ ବର୍ଣ୍ଣ ସମୂହକୁ ଅକ୍ଷର ବ୍ରହ୍ମ ହିସାବରେ ବିଚାର କରାଯାଇ ତଦନୁସାରୀ କ୍ରମ ନିର୍ଣ୍ଣୟ କରାଯାଇଛି । ଗୁଣ୍ଡୁପୁର ଠାରୁ

କିଛି ଦୂରସ୍ଥ ମରେଚଗୁଡ଼ା ଗ୍ରାମରେ ଏକ ଶ୍ରେଷ୍ଠ ପାହାଡ଼ ମୁଣ୍ଡିଆ ଉପରେ ଅବସ୍ଥିତ ଏକ ନିଜସ୍ୱ ମନ୍ଦିର ବା ପୂଜାସ୍ଥଳୀରେ ଏ ସବୁ ଅକ୍ଷର ବ୍ରହ୍ମ ପୂଜା ପାଉଛି । ଏହି ମନ୍ଦିର ୧୯୫୬ରେ ନିର୍ମିତ ହୋଇଛି । ଏ ସବୁ ଅକ୍ଷର ହୃଦୟାକୃତି ଏକ କଳା ପଥର ଉପରେ ଖୋଦିତ ହୋଇ ଥିବାର ଦେଖାଯାଏ । ଏହା ମନୁଷ୍ୟକୃତ ନୁହେଁ ବୋଲି କୁହାଯାଇଥାଏ ।

## ସଉରା ବର୍ଣ୍ଣମାଳା

## Saura Alphabets

| | | | | | |
|---|---|---|---|---|---|
| 𑃐<br>ସା<br>Sa | 𑃑<br>ଟା<br>Ta | 𑃒<br>ବା<br>Ba | 𑃓<br>ଚା<br>Cha | 𑃔<br>ଡ଼ା<br>Da | 𑃕<br>ଗା<br>Ga |
| 𑃖<br>ମା<br>Ma | 𑃗<br>ଙ୍ଗା<br>Nga | 𑃘<br>ଲା<br>La | 𑃙<br>ନା<br>Na | 𑃚<br>ୱା<br>Wa | 𑃛<br>ପା<br>Pa |
| 𑃜<br>ୟା<br>Ya | 𑃝<br>ରା<br>Ra | 𑃞<br>ହା<br>Ha | 𑃟<br>କା<br>Ka | 𑃠<br>ଜା<br>Ja | 𑃡<br>ଞା<br>Yan |
| 𑃢<br>ଅ<br>A | 𑃣<br>ଏ<br>E | 𑃤<br>ଇ<br>I | 𑃥<br>ଉ<br>U | 𑃦<br>ଅ<br>O | 𑃧, 𑃨<br>ଐ, ମ୍ରାଇ<br>X, Mrai |

| | | | | | | | | | |
|---|---|---|---|---|---|---|---|---|---|
| 𑃱 | 𑃲 | 𑃳 | 𑃴 | 𑃵 | 𑃶 | 𑃷 | 𑃸 | 𑃹 | 𑃰 |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୦ |
| 1 | 2 | 3 | 4 | 5 | 6 | 7 | 8 | 9 | 0 |

# ସ୍ୱନିମ୍
# PHONEME

ପୂର୍ବରୁ ସଉରା ବର୍ଣ୍ଣମାଳା ଓ ଲିପି ସମ୍ପର୍କରେ ଆଲୋଚନା କରାଯାଇଛି । ଯେକୌଣସି କଥିତ ବା ଲିଖିତ ଭାଷାକୁ ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ଆଲୋଚନା କଲାବେଳେ ଏହାର ଉଚ୍ଚାରଣ ବା ଅଭିବ୍ୟକ୍ତି ପଦ୍ଧତି ପ୍ରତି ଗୁରୁତ୍ୱ ପ୍ରଦାନ କରିବାକୁ ହୋଇଥାଏ । କୌଣସି ଭାଷାର ଧ୍ୱନି ସମୂହକୁ ଏହିପରି ପର୍ଯ୍ୟାଲୋଚନା କଲେ ଅର୍ଥ ବିଭେଦକାରୀ ଧ୍ୱନି ଗୁଡ଼ିକ ଦୃଷ୍ଟିଗୋଚର ହୋଇଥାଏ । ଭାଷା ବିଜ୍ଞାନ ଅନୁଯାୟୀ ଏସବୁ ନିର୍ଦ୍ଦିଷ୍ଟ ସଙ୍କେତ ମାଧ୍ୟମରେ ପ୍ରକାଶିତ ହୋଇଥାଏ । ଏହି ସଙ୍କେତ ବା ଅର୍ଥବିଭେଦକାରୀ ଧ୍ୱନି ଗୁଡ଼ିକୁ ସାଧାରଣତଃ ଆଲୋଚ୍ୟ ଭାଷାର ମୂଳବର୍ଣ୍ଣ ବା ସ୍ୱନିମ୍ (Phoneme) ବୋଲି କୁହାଯାଇଥାଏ । ଏହି ପୁସ୍ତକରେ ବ୍ୟବହୃତ ନିର୍ଦ୍ଦିଷ୍ଟ ସ୍ୱନିମ୍ ବା ସଙ୍କେତ ଗୁଡ଼ିକୁ ପୂର୍ବରୁ ସୂଚନାରେ ଦିଆଯାଇଛି ।

'ସଉରା ବର୍ଣ୍ଣମାଳା' ଆଲୋଚନାରେ କଥିତ ତଥା ଲିଖିତ ସଉରା ଭାଷାରେ ଓଡ଼ିଆ ଭାଷା ଭଳି ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନ ବର୍ଣ୍ଣ ଥିବାର ସୂଚନା ଦିଆଯାଇଛି । ଓଡ଼ିଆ ଭାଷା ଭଳି ସଉରା ଭାଷାରେ ମଧ୍ୟ ସ୍ୱନିମ୍ ସମୂହର ଧ୍ୱନିତାତ୍ତ୍ୱିକ ବର୍ଗୀକରଣ ସମ୍ଭବ । ଅଗ୍ର, କେନ୍ଦ୍ରିକ ଓ ପଶ୍ଚ ଅବସ୍ଥିତି କ୍ରମରେ ସ୍ୱରଧ୍ୱନି ଗୁଡ଼ିକୁ ଉଚ୍ଚ, ମଧ୍ୟ ଓ ନିମ୍ନ ଭାବରେ ବର୍ଗୀକରଣ କରାଯାଇପାରେ । ସେହିପରି ବ୍ୟଞ୍ଜନ ଧ୍ୱନି ଗୁଡ଼ିକୁ ମଧ୍ୟ ଦ୍ୱ୍ୟୋଷ୍ଠ୍ୟ, ଦନ୍ତ୍ୟ, ମୂର୍ଦ୍ଧନ୍ୟ, ତାଳବ୍ୟ, କଣ୍ଠ୍ୟ ଓ କଣ୍ଠମୂଳୀୟ ଅବସ୍ଥିତି ଅନୁଯାୟୀ ସ୍ପର୍ଶ (ଅଘୋଷ, ସଘୋଷ, ସଘର୍ଷୀ, ନାସିକ୍ୟ) ଓ ପ୍ରବାହୀ (ପାର୍ଶ୍ୱିକ୍ୟ, ଗଡ଼ିତ, କମ୍ପିତ, ଅର୍ଦ୍ଧ ବ୍ୟଞ୍ଜନ) ଭାବରେ ବର୍ଗୀକରଣ କରାଯାଇପାରେ । ଯଥାଃ—

## ସ୍ୱରଧ୍ୱନି

| | ଅଗ୍ର | | କେନ୍ଦ୍ରିକ | | ପଶ୍ଚ |
|---|---|---|---|---|---|
| ଉଚ୍ଚ | i | | | | u |
| ମଧ୍ୟ | | e | ɔ | o | |
| ନିମ୍ନ | | | a | | |

## ବ୍ୟଞ୍ଜନଧ୍ୱନି

| | | ଦ୍ୱ୍ୟୋଷ୍ଠ୍ୟ | ଦନ୍ତ୍ୟ | ମୂର୍ଦ୍ଧନ୍ୟ | ତାଲବ୍ୟ | କଣ୍ଠ୍ୟ | କଣ୍ଠମୂଳୀୟ |
|---|---|---|---|---|---|---|---|
| ସ୍ପର୍ଶ | ଅଘୋଷ | p | ṭ | t | c | k | ? |
| | ସଘୋଷ | b | ḍ | d | j | g | |
| ଘର୍ଷୀ | | | s | | | | h |
| ନାସିକ୍ୟ | | m | n | n | ñ | ŋ | |
| ପ୍ରବାହୀ ପାର୍ଶ୍ୱିକ | | | l | | | | |
| ତାଡ଼ିତ | | | | r | | | |
| କମ୍ପିତ | | | r | | | | |
| ଅର୍ଦ୍ଧ ବ୍ୟଞ୍ଜନ | | w | | y | | | |

ଭାଷା ତାତ୍ତ୍ୱିକ ଦୃଷ୍ଟିକୋଣରୁ ସଉରା ଭାଷାରେ ଦୁଇସ୍ୱର ବିଶିଷ୍ଟ ସ୍ୱର ଅନୁକ୍ରମ ରହିଛି । ଓଡ଼ିଆରେ ଥିବା ଯୁକ୍ତାକ୍ଷର ପରି ଏଥିରେ ମଧ୍ୟ ଦୁଇ ବା ତିନୋଟି ବ୍ୟଞ୍ଜନ ଧ୍ୱନିର ସମ୍ମିଶ୍ରଣରେ ସଂଯୁକ୍ତ ବ୍ୟଞ୍ଜନ (consonant clusters) ସୃଷ୍ଟି ହୋଇଥାଏ । ଏହି ପ୍ରକାର ସଂଯୁକ୍ତ ବ୍ୟଞ୍ଜନ ଦୁଇ ଧ୍ୱନି ବିଶିଷ୍ଟ, ତିନି ଧ୍ୱନି ବିଶିଷ୍ଟ ଓ କେବେ କେବେ ଚାରି ଧ୍ୱନି ବିଶିଷ୍ଟ ହୋଇ ମଧ୍ୟ ବ୍ୟବହୃତ ହେବାର ଦେଖାଯାଏ ।

ସଉରା ଶବ୍ଦ ଗଠନରେ ମଧ୍ୟ ଅନେକ ବିଶେଷତ୍ୱ ପରିଲକ୍ଷିତ ହୋଇଥାଏ । ଅନେକ କ୍ଷେତ୍ରରେ ଶବ୍ଦଗୁଡ଼ିକ ଅନେକ ସ୍ୱନିମ୍ ବା ଅକ୍ଷରକୁ ନେଇ ଖୁବ୍ ବଡ଼ ଆକାରର ହୋଇଥାଏ । ତେବେ ଓଡ଼ିଆ ବା ଅନ୍ୟ ଭାଷାର ମୂଳ ଶବ୍ଦରୁ ସଉରା ଶବ୍ଦ ଅନୁବାଦ କଲାବେଳେ ମୂଳ ସଉରା ଭାଷାରେ ଏପରି ଶବ୍ଦ ନ ଥିବାରୁ ତାହାକୁ ଅବିକଳ ବୁଝାଇବାକୁ ପ୍ରୟାସ କରିବା ଦ୍ୱାରା ଏହିପରି କେତେକ ବଡ଼ ଆକାରର ଶବ୍ଦ ସୃଷ୍ଟି ହୋଇଥାଏ । ଓଡ଼ିଆ ଭାଷାପରି ସଉରା ଭାଷାରେ ମଧ୍ୟ ମୌଳିକ, ଯୌଗିକ, ଯୁଗ୍ମ ଓ ଜଟିଳ ଶବ୍ଦର ବ୍ୟବହାର ଦେଖାଯାଏ । ଶେଷୋକ୍ତ ତିନିପ୍ରକାର ଶବ୍ଦକୁ ଭାଷାତାତ୍ତ୍ୱିକ ଦୃଷ୍ଟିରୁ ବ୍ୟୁତ୍ପାଦିତ ଶବ୍ଦ କୁହାଯାଇଥାଏ । ଯୁଗ୍ମ ଶବ୍ଦଗଠନ ପୁନଶ୍ଚ ସମାର୍ଥକ, ବିପରୀତାର୍ଥକ ଓ ସହ-ସମ୍ବନ୍ଧାନ୍ୱିତ ଓ ପ୍ରତିଧ୍ୱନ୍ୟାତ୍ମକ ଭାବରେ ହୋଇଥାଏ । ଯେହିପରି ଜଟିଳ ଶବ୍ଦ ଗଠନ ମଧ୍ୟ ପ୍ରାତିପାଦିକ ଓ ପ୍ରତ୍ୟୟ ସଂଯୋଗରେ ଏବଂ ଏକାଧିକ ବିଶେଷ୍ୟ ବା କିମ୍ବା ପ୍ରାତିପାଦିକ ସହ ପ୍ରତ୍ୟୟ ସଂଯୋଗରେ ଗଠିତ ହୋଇଥାଏ ।

ଓଡ଼ିଆ ଭାଷା ସହ ତୁଳନା କରି ବିଚାର କଲେ, ସଉରା ଭାଷାରେ ଅନେକ କିଛି ବିଶେଷତ୍ୱ ଥିବାର ପରିଲକ୍ଷିତ ହୁଏ । ନିମ୍ନରେ ସଉରାଭାଷାରେ କେତୋଟି ବିଶେଷତ୍ୱ ପ୍ରଦତ୍ତହେଲା ।

୧) ସଉରାଭାଷାକୁ ସାଧାରଣତଃ 'ସରା' / Sɔra / ଭାଷା ବୋଲି କୁହାଯାଏ ।

୨) ସଉରା ଭାଷାରେ 'ଦ' / ḍ / ର ବ୍ୟବହାର ପ୍ରାୟ ଦେଖାଯାଏ ନାହିଁ ।

୩) ସାଧାରଣତଃ ସଉରା ଶବ୍ଦ ଗୁଡ଼ିକ ଶେଷରେ ହଲନ୍ତର / ୍ / ବ୍ୟବହାର ବହୁଳ ଦେଖାଯାଏ । ହଲନ୍ତପରି ଅନେକ ସଉରା ଶବ୍ଦ ଶେଷରେ ବିସର୍ଗ (ଃ) or / ? / ରହେ ।

୪) କେବଳ ଶୁଦ୍ଧ ସଉରା ଉଚ୍ଚାରଣରେ ଅନୁନାସିକ ଉଚ୍ଚାରଣ ରହେ ।

Example :— Lanjia— Tare e-ten

Suddha— Tare-e te~

୫) ସଉରା ଭାଷାରେ ଓଡ଼ିଆ ବର୍ଣ୍ଣ 'ଠ' /tha/ ର ବ୍ୟବହାର ଆଦୌନାହିଁ । ସେହିପରି 'ଟ'/t/ର ବ୍ୟବହାର ମଧ୍ୟ ବହୁତ କମ୍ ଦେଖାଯାଏ । ମାତ୍ର 'ତ'/ṭ/ର ବ୍ୟବହାର ବିଶେଷ ହୋଇଥାଏ । 'ଖ'/Kha/ର ବ୍ୟବହାର ମଧ୍ୟ ବିଶେଷ ଦେଖାଯାଏ ନାହିଁ ।

୬) ସଉରା ଭାଷାରେ 'ଙ'/ŋ/ ଏବଂ 'ଞ'/ñ/ର ବ୍ୟବହାର ବହୁଳ ଦେଖାଯାଉଥିବା ବେଳେ, 'ଙ୍ଗ'/ngɔ/ର ବ୍ୟବହାର କ୍ୱଚିତ ଦେଖାଯାଇଥାଏ । ଶୁଦ୍ଧ ସଉରା ଭାଷାରେ 'ଙ୍ଗ' ଭଳି ଉଚ୍ଚାରଣ କେହି କେହି ଦର୍ଶାଇଲେ ମଧ୍ୟ ତାହା ମୂଳତଃ 'ଙ'/ŋ/ଭଳି ଉଚ୍ଚାରିତ ହୋଇଥାଏ ।

୭) ସଉରା ଭାଷାରେ 'ଣ'/n/ର ବ୍ୟବହାର ଦେଖାଯାଏ ନାହିଁ, ମାତ୍ର 'ନ'/n/ର ବ୍ୟବହାର ଦେଖାଯାଏ । ତେବେ 'ଣ୍ଡ'/nd/ର ବ୍ୟବହାର ବିଶେଷ ଦେଖାଯାଏ ।

୮) ସେହିପରି ସଉରା ଭାଷାରେ 'ଳ' ବଦଳରେ 'ଲ'/ ɔ/ର ବ୍ୟବହାର ବହୁଳ ଦେଖା ଯାଇଥାଏ ।

୯) ସଉରା ଶବ୍ଦଗୁଡ଼ିକ ଓଡ଼ିଆ ଶବ୍ଦ ତୁଳନାରେ ଅଧିକ ବେଗରେ (speed)ରେ ଉଚ୍ଚାରିତ ହୋଇଥାଏ ବା କୁହା ଯାଇଥାଏ ।

୧୦) ସଉରା ଶବ୍ଦଗୁଡ଼ିକରେ 'ଇ'/i/ ବା ଇଃ/i?/ର ବ୍ୟବହାର ବହୁଳ ଦେଖାଯାଏ ।

୧୧) ଦୈନନ୍ଦିନ ଜୀବନରେ ସଉରା ଭାଷାରେ ଅଭିବ୍ୟକ୍ତ କଲାବେଳେ ଅନେକ କ୍ଷେତ୍ରରେ 'କାଳ' ପ୍ରତି ଗୁରୁତ୍ୱ ଆରୋପ କରାଯାଇ ନଥାଏ । ନିମ୍ନୋକ୍ତ ତିନି ପ୍ରକାର ଉଚ୍ଚାରଣକୁ ଲକ୍ଷ୍ୟ କରାଯାଉ :—

(i) Ani ? tal = ଲେଖିସାରିଲି / Past tense

(ii) I ? tal = ଲେଖୁଛି / Present tense

(iii) Idital = ଲେଖୁଛି ଓ ଲେଖିବି / Present and Future tense

ଉପରୋକ୍ତ ଭାବରେ ସଉରା ଭାଷାରେ ଲେଖିବା 'ଶବ୍ଦ'ଟିର 'କାଳ' ଭେଦରେ ତିନି ପ୍ରକାର ବ୍ୟାକରଣଗତ ଅର୍ଥ ରହିଥିଲେ ମଧ୍ୟ, ଦୈନନ୍ଦିନ ଜୀବନରେ ଏହା ଏକପ୍ରକାର ବ୍ୟବହାର ହୋଇଥାଏ ।



## ବିଶେଷ୍ୟ

## NOUN

## JARIBIL (S), ARBIR (L)

''କାହା ବିଷୟରେ କିଛି କହିବାକୁ ହେଲେ ତାହାର ଗୋଟିଏ ନାମ ଆବଶ୍ୟକ ହୁଏ । ଯେଉଁ ପଦ କୌଣସି ନାମ (ପ୍ରାଣୀ, ସ୍ଥାନ, ତଥା ବସ୍ତୁ) ପ୍ରକାଶ କରେ, ତାହାକୁ ବିଶେଷ୍ୟ କହନ୍ତି'' (ସର୍ବସାର ବ୍ୟାକରଣ) । ବିଶେଷ ଭାବରେ ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ କହିବାକୁ ଗଲେ—''ଲିଙ୍ଗ, ବଚନ ଏବଂ କାରକ ବିଭକ୍ତି ପ୍ରତ୍ୟୟ ଯୋଗରେ ଯେଉଁ ଶବ୍ଦର ରୂପଗଠନ ପ୍ରକ୍ରିୟାରେ ପରିବର୍ତ୍ତନ ଘଟିଥାଏ ଏବଂ ଏହି ପରିବର୍ତ୍ତିତ ରୂପ ବାକ୍ୟ ମଧ୍ୟରେ ଥିବା ଅନ୍ୟାନ୍ୟ ପଦ ସହିତ ସଂପର୍କ ନିର୍ଦ୍ଧାରଣ କରେ, ତାହା ବିଶେଷ ପଦ ନାମରେ ନାମିତ'' (G. Dash, 1990 : 12) ଏଠାରେ ଛଅ ପ୍ରକାର ବିଶେଷ୍ୟ ପ୍ରଦାନ କରାଯାଉଛି ।

(1) ବସ୍ତୁବାଚକ ବିଶେଷ୍ୟ— Material Noun— Jɔndraṭbil (s), Janaban Aglɔmṭen Abirna (L)

(2) ବିଶେଷ ବସ୍ତୁବାଚକ ବା ବ୍ୟକ୍ତିବାଚକ ବିଶେଷ୍ୟ— Proper Noun— Mɔjibil (s), Mandran Aglɔmṭen Abirna (L)

(3) ସାଧାରଣ ବସ୍ତୁ ବାଚକ ବା ଜାତି ବାଚକ ବିଶେଷ୍ୟ— Common Noun- Jaṭibil (s), Jatin Aglɔmṭen Abirna (L)

(4) ଗୁଣ ବା ଅବସ୍ଥାବାଚକ ବିଶେଷ୍ୟ— Abstract Noun— Jɔbil (s), ṭaramṭaman Aglɔmṭen Abirna (L)

(5) କ୍ରିୟାବାଚକ ବିଶେଷ୍ୟ— Jɔrubil (s), Lɔnumɔŋ Aglɔmṭen Abirna (L)

(6) ସମୂହ ବାଚକ ବିଶେଷ୍ୟ—Collective Noun— Jaruruk Abirnan (L).

(1) **ବସ୍ତୁବାଚକ ବିଶେଷ୍ୟ— Material Noun**
**Jɔndraṭbil (s), Janaban Aglɔmten Abirna (L)**

ଯେଉଁ ଶବ୍ଦ କହିଲେ କୌଣସି ଦ୍ରବ୍ୟ, ଧାତୁ ଇତ୍ୟାଦିକୁ ବୁଝାଏ, ତାହାକୁ ବସ୍ତୁବାଚକ ବିଶେଷ୍ୟ କୁହାଯାଏ ।

ଯଥା :—

| | | |
|---|---|---|
| ପଥର— | Stone— | areŋ (S&L) |
| ସୁନା | Gold— | rna (S&L) |
| ଜଳ— | Water— | da-a (S&L) |
| ଦୁଗ୍ଧ— | Milk— | adub (S&L) |
| ପେଡ଼ି— | Basket— | Pe-la (S), Pi-la (L) |
| କାଠ— | Wood— | aŋɔl (S&L) |

(2) **ବ୍ୟକ୍ତିବାଚକ ବିଶେଷ୍ୟ— Proper Noun**
**Mɔjibil (s), Mandran Aglɔmṭen Abirna (L)**

"ଯେଉଁ ନାମ ନିର୍ଦ୍ଦିଷ୍ଟ ବସ୍ତୁକୁ ବୁଝାଏ, ତାହାକୁ ବିଶେଷ ବସ୍ତୁବାଚକ ବିଶେଷ୍ୟ ବା ବ୍ୟକ୍ତିବାଚକ ବିଶେଷ୍ୟ କହନ୍ତି" (ସର୍ବସାର ବ୍ୟାକରଣ) । ଏହା ଯେ କୌଣସି ମନୁଷ୍ୟ, ସ୍ଥାନ, ତଥା ବସ୍ତୁର ନାମକୁ ବୁଝାଏ ।

| | | | |
|---|---|---|---|
| ରାମ – | Rama— | Ramɔ | (S&L) |
| ହରି— | Hari— | Hɔri | |
| ଦାଶରଥୀ— | Dasharathi— | Dashɔrɔthi | ,, |
| ଗଙ୍ଗା— | Ganga— | Gɔnga | |
| ଯମୁନା— | Yamuna— | Yɔmuna | |
| ଗୁଣୁପୁର - | Gunupur— | Gunupur | ,, |
| ଆଗ୍ରା— | Agra— | Agra | |
| ଭୁବନେଶ୍ୱର— | Bhubaneswar— | Bhubɔneswɔr | |

(3) ଜାତିବାଚକ ବିଶେଷ୍ୟ— **Common Noun**
**Jaṭibil (S), Jaṭin Aglɔmṭen Abirna (L)**

"ଯେଉଁ ନାମ ଏକାଧିକ ବସ୍ତୁର ସାଧାରଣ ନାମ ଅଟେ, ତାହାକୁ ସାଧାରଣ ବସ୍ତୁବାଚକ ବା ଜାତିବାଚକ ବିଶେଷ୍ୟ କହନ୍ତି" (ସର୍ବସାର ବ୍ୟାକରଣ) । ଯଥା : –

| | | |
|---|---|---|
| ପର୍ବତ— | Hill— | bru or bɔru (S&L) |
| ମନୁଷ୍ୟ— | Man— | mɔndra (S&L) |
| ବୃକ୍ଷ— | Tree— | aneb (S), ara & aneb (L) (Aneb:- Plants or trees in general, Ara:- only big trees) |
| ଦେଶ— | Country— | desa (S), disa (L) |
| ଗୋରୁଗାଈ— | Cattle— | ṭaŋnai (S), ṭaŋglienji (L) |
| ପକ୍ଷୀ— | Bird— | ɔnṭiṭ (S&L) or ɔnṭid (L) |
| ଗାଁ— | Village— | gɔrjaŋ (S&L) |
| ସ୍ଥଳ— | Land— | srɔba (S&L) |
| ନଦୀ— | River— | alɔ (S&L) |
| ପୁରୁଷ— | Male— | ɔnger (S&L) |
| ସ୍ତ୍ରୀ— | Female— | ansɔlo (S), inslo (L), or anslɔ (L) |

## (4) ଗୁଣ ବା ଅବସ୍ଥା ବାଚକ ବିଶେଷ୍ୟ— **Abstract Noun**
**Jɔbil (s), ṭaramṭaman agalamṭen Abirna (L).**

'ସବସାର ବ୍ୟାକରଣ' ଅନୁସାରେ—ମନଦ୍ୱାରା ଉପଲବ୍ଧ ବସ୍ତୁମାନଙ୍କ ନାମକୁ ଗୁଣ, ଅବସ୍ଥା ଓ କାର୍ଯ୍ୟ ଭେଦରେ ତିନି ଭାଗରେ ବିଭକ୍ତ କରାଯାଇଥାଏ । ଏଠାରେ କେବଳ ଗୁଣ ଓ ଅବସ୍ଥାର ଅବତାରଣା କରାଯାଉଛି । ଅନେକ କ୍ଷେତ୍ରରେ କଏ ଗୁଣର ନାମ ଓ କଏ ଅବସ୍ଥାର ନାମ, ତାହା ଜାଣିବା କଠିନ ହୋଇଥିବାରୁ ସାଧାରଣତଃ ଗୁଣ ଓ ଅବସ୍ଥାର ନାମକୁ ଗୁଣବାଚକ ବିଶେଷ୍ୟ ବୋଲି ଗ୍ରହଣ କରାଯାଇଥାଏ । ଏଣୁ ଯେଉଁ ନାମ ବା ବିଶେଷ୍ୟ ଦ୍ୱାରା କୌଣସି ଗୁଣ ବା ଅବସ୍ଥା ଉଭୟ ବୁଝାଯାଇଥାଏ, ତାହାକୁ ଗୁଣ ବା ଅବସ୍ଥା ବାଚକ ବିଶେଷ୍ୟ କୁହାଯାଏ ।

| | | |
|---|---|---|
| ସୌନ୍ଦର୍ଯ୍ୟ— | Beauty— | langa or dɔlɔ (S&L) ('langa' refers to all things, dɔlɔ refers to females) |
| ପାଣ୍ଡିତ୍ୟ – | Wiseness— | panditan(S), bɔnuddi(L) |
| ନମ୍ରତା— | Modesty— | lɔgaṭ (S&L) |
| ଧୈର୍ଯ୍ୟ— | Patience— | Umaŋ (S), Uyub (L) |
| ଉତ୍ସାହ— | Encouragement— | Uṭchharɔm (S), Manɔ-ɔŋin (L) |
| ଭୟ— | Fear— | bɔnṭoŋ (S&L) |
| ସାହାସ— | Bravery— | umɔŋ (S), anumaŋ (L) |
| ଭଲ— | Good— | dɔlɔn (S), bɔŋsa (L) |
| ମନ୍ଦ— | Bad— | khinagin (S), irbɔŋsa, irsi, or erbaŋsa (L). |

## (5) କ୍ରିୟା ବାଚକ ବିଶେଷ୍ୟ—
**Jɔrubil (S), Lɔnumɔn Aglɔmṭen Abirna (L)**

ଗୁଣବାଚକ ବିଶେଷ୍ୟ କ୍ଷେତ୍ରରେ ମନଦ୍ୱାରା ଉପଲବ୍ଧ ବସ୍ତୁମାନଙ୍କ ନାମ ମଧ୍ୟରୁ ଗୁଣ ଓ ଅବସ୍ଥାର ଆଲୋଚନା କରାଯାଇଛି । ଏହାର ତୃତୀୟ ବିଭାଗଟି ହେଉଛି କାର୍ଯ୍ୟ । ଯେଉଁ ବିଶେଷ୍ୟ ଦ୍ୱାରା କୌଣସି କାର୍ଯ୍ୟର ନାମକୁ ବୁଝାଏ, ତାକୁ କ୍ରିୟା ବାଚକ ବିଶେଷ୍ୟ କୁହାଯାଏ ।

ଭୋଜନ— Eating— Gagana (S&L)

ଦର୍ଶନ— Observation—Gijɔn or Ganijɔn (S),
Gigijɔn (L)

ଭାଷଣ— Speech— Barirɔn (S), ñanaŋbir (L)

ଶୟନ— Sleeping— Danimɔd (S&L) or
Dimadnan (L)

ଭ୍ରମଣ— Travel— Gɔnrɔt (S), Gɔrɔt (L)

ଗମନ— Going— Yrna (S) ñana (L)

**(6) ସମୂହ ବାଚକ ବିଶେଷ୍ୟ— Collective Noun, Jaruruk Abirnan (L)**

ଯେଉଁ ଶବ୍ଦ କହିଲେ କୌଣସି ବସ୍ତୁ, ପଦାର୍ଥର ସମୂହ ଗୁଣର ସୂଚନା ମିଳିଥାଏ, ତାକୁ ସମୂହ ବାଚକ ବିଶେଷ୍ୟ କହନ୍ତି । ଯଥା :—

ଶ୍ରେଣୀ— Class— Klax (S), Yŋna agrɔbgɔb (L)

ପରିବାର— family— Kutummi (S),
Keja or Si-iŋ maranji (L)



# ସର୍ବନାମ— PRONOUN

## Sɔbɔrnum (S)

## Kudub-añiman Agalamten Abirna (L)

ଯେଉଁ ପଦ ଅନ୍ୟ ପଦ ପରିବର୍ତ୍ତରେ ବ୍ୟବହୃତ ହୁଏ, ତାହାକୁ ସର୍ବନାମ କୁହାଯାଏ । ସାଧାରଣତଃ ଏହା ବିଶେଷ୍ୟ, ବିଶେଷଣ ଓ ବାକ୍ୟାର୍ଥ ବା ଖଣ୍ଡ ବାକ୍ୟ ପରିବର୍ତ୍ତରେ ବ୍ୟବହୃତ ହୁଏ ।

### (1) ବିଶେଷ୍ୟ ପରିବର୍ତ୍ତେ (For Noun), Anin-ate (L) :-

କାମାକ୍ଷା ପ୍ରସାଦ ଢେଙ୍କାନାଳର ରାଜା ଥିଲେ । ତାଙ୍କର ଦୁଇପୁଅ ଥିଲେ

(i) Kamakshya Prasad Dhenkanalɔna rajadeɔ dakubunete. Anin unji anŋngen dakboleji (S).

(ii) Kamakshya Prasad Dhenkanal araja dakule. Anin unji ɔnger ɔnan dakule (L).

### (2) ବିଶେଷଣ ପରିବର୍ତ୍ତେ (For Adjective), ɔnti-ati (L).

ଉଇନାରବ୍ରିମ ବହୁ ରଗୀ ଥିଲା, କିନ୍ତୁ କାଞ୍ଚନ ତାହା ନ ଥିଲା ।

(i) Uinarbrim kɔrraŋ brb-dale mɔntrɔm, kanchɔn kɔtija (S).

(ii) Uninarbrim bɔi bɔi brabmɔr dakule, bin-dɔ kanchɔnɔn anin ɔmbritid (L).

### (3) ବାକ୍ୟାର୍ଥ ବା ଖଣ୍ଡ ବାକ୍ୟ ପରିବର୍ତ୍ତେ (For a sentence or clause) Kɔniati (L).

ଲକ୍ଷ୍ମୀଧର ବଡ଼ କୃପଣ, ଏହା କିଏ ନ ଜାଣେ !

(i) Laxmidhɔrɔ lobidŋm, kɔn budhen eryɔlɔm (S).

(ii) Laxmidhɔrɔ bɔi bɔi irsu-amɔr, Kɔniati buten irgalam (L)

ସର୍ବନାମର ଉପରୋକ୍ତ ଛଅ ପ୍ରକାର ସାଧାରଣ ବ୍ୟବହାର ସାଙ୍ଗକୁ ଏହାର ପାଞ୍ଚ ପ୍ରକାର ବିଶେଷ ବ୍ୟବହାର ମଧ୍ୟ ରହିଛି । ସଉରା ଭାଷାରେ ପୁରୁଷବାଚୀ ସର୍ବନାମ ବିଶେଷ ଭାବରେ ଦେଖିବାକୁ ମିଳୁଥିବାରୁ ପ୍ରଥମ ପ୍ରକାର ବା ଶ୍ରେଣୀର ସର୍ବନାମକୁ ପୁରୁଷ ବାଚକ ଓ ଅନ୍ୟ ଚାରି ପ୍ରକାର ବା ଶ୍ରେଣୀର ସର୍ବନାମକୁ ମୁଖ୍ୟତଃ ଅପୁରୁଷବାଚକ ସର୍ବନାମ ଭାବରେ ଆଲୋଚନା କରାଯାଇଥାଏ ।

## (1) ପୁରୁଷ ବାଚକ ବା ବ୍ୟକ୍ତି ବାଚକ ସର୍ବନାମ, **Purɔŋbir(S)**

୧ମ ପୁରୁଷ — ମୁଁ ଖେଳେ— ñen diṭsiŋ (S)

ñen gɔṭasiṭinai (L)

ଆମ୍ଭେମାନେ— Mɔnlen (S). Anlen (L)

୨ୟ ପୁରୁଷ— ତୁମେ ଯାଅ— Mɔn niya (S)

Amɔn yira (L)

ତୁମ୍ଭେମାନେ— Ambiŋji (S)

Ambin or Ambinji (L)

୩ୟ ପୁରୁଷ— ସେ ଦୌଡ଼େ – Anin jirṭɘn (S)

Anin Yirṭ n cr yirṭin (L)

ସେମାନେ— Aninji (S), Aninji (L)

## (2) ଅପୁରୁଷ ବାଚୀ ସର୍ବନାମ

ବ୍ୟାକରଣ ଗତ ବ୍ୟବହାର ଦୃଷ୍ଟିରୁ ଅପୁରୁଷବାଚୀ ସର୍ବନାମକୁ ପୁନଶ୍ଚ ଚାରି ଭାଗରେ ବିଭକ୍ତ କରାଯାଇଥାଏ । ଯଥା:— ପ୍ରଶ୍ନବାଚକ, ନିର୍ଦ୍ଦେଶାତ୍ମକ, ସମ୍ବନ୍ଧବାଚକ ଓ ସମୁଚ୍ଚୟୀ ସର୍ବନାମ ।

### 2.1 ପ୍ରଶ୍ନବାଚକ ସର୍ବନାମ, **Interrogative Pronoun Walpɔŋbir (S), Anoalbir (L)**

କିଏ ଯାଉଛ ? — Baṭen ñiṭe (S) ?

Buṭin yerṭe (L) ?

କଅଣ ପଗ୍ଗୁରୁଛ ? — Eṭin Opunṭe ? (S)

Iṭindɔ Walṭe ? (L)

କାହାକୁ ପଗ୍ଗୁରୁଛନ୍ତ ? —Boṭin Opunṭe ? (S)

Buṭin əŋwalṭe ? (L)

2.2 **ନଦେ୍ଦଶାତ୍ମକ ସର୍ବନାମ, Demonstrative Pronoun Anu ? Puŋbir (S), Banaibir (L)**

| | | | |
|---|---|---|---|
| ତାହା— | Kɔṭ (S) | ଯାଅ— | Ya (S), |
| (ନକଟବର୍ତ୍ତୀ)— | Anṭe (L) | | Yira (L) |
| (ଦୂରବର୍ତ୍ତୀ)— | Kuni (L) | | |
| ଏହା— | Kɔn (S) | କର— | ṭuba (S), |
| (ନକଟବର୍ତ୍ତୀ) | Kɔni (L) | | Luma (L) |
| ଏହ— | Kɔn (S) | ଢଅ— | ṭia (S) |
| (ନକଟବର୍ତ୍ତୀ) | Kani (L) | | ṭiyeŋ (L) |

2.3 **ସମ୍ବନ୍ଧ ବାଚକ ସର୍ବନାମ— Relative Pronoun Sɔmaiṭum (S), Ayaŋṭben Abirna. (L)**

(a) ଯେ ମୂଳଧନ ଖଟାଏ, ସେ ବାଣିଜ୍ୟ କରିପାରେ ।

Buṭe ṭɔbṭene, anin bepara rɔpṭiṭuṛṭe (S)

Buṭinte abbɔŋ ṭɔnkan ṭile rɔpṭiṭe, anin bebaran rɔptilumṭe (L)

(b) ଯାହାକୁ ପୋଲିସ ଧରେ ତାହାର ସମ୍ମାନ ଗୁଲିଯାଏ ।

Boṭin adna poleseyɔmṭe anina gɔndraisoṭe (S)

ṭuṛkan baṭe yenɔm- yɔmɔn amɔndra akudub ṭɔrɔmṭɔmɔn yirte.

(ଙ) ଯିଏ ପାଠ ପଢ଼ିବ ସିଏ ମଣିଷ ହେବ ।

Buṭin ñaṭine anin mandradeṭo. (S)

Buṭiŋṭe yɔŋyɔŋṭe anin mɔndra gɔdiyɔlṭe. (L)

## ୨.୪ ସମୁଚ୍ଚୟୀ ସର୍ବନାମ—**Conjunctive Pronoun**

ଏପରି ଲୋକ ନାହିଁ ଯିଏ ଜଗନ୍ନାଥଙ୍କର ନାମ ନ ଶୁଣିଛି ।

Engam amɔndɔra ija boṭe keṭuŋ naiyom arida daŋṭ. (S)

Enogob amɔndra ija buṭinṭe Jɔgɔnnathɔ anim yiramdaŋ.



## ବିଶେଷଣ— **ADJECTIVE**

## **Jarel (S)**

ଯେଉଁ ପଦ ଅନ୍ୟ ପଦର ଗୁଣ, ଅବସ୍ଥା, ସଂଖ୍ୟା, ପରିମାଣ ଇତ୍ୟାଦି ପ୍ରକାଶ କରେ, ତାକୁ ବିଶେଷଣ କହନ୍ତି । 'ସର୍ବସାର ବ୍ୟାକରଣ' ଅନୁସାରେ ବିଶେଷଣକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇଛି; ଯଥା— ନାମ ବିଶେଷଣ ଓ ଭାବ ବିଶେଷଣ । ଏହା ବ୍ୟତୀତ ସର୍ବନାମର ବିଶେଷଣ ଏବଂ କ୍ରିୟାର ବିଶେଷଣ ଭାବରେ ଆଉରି ଦୁଇ ପ୍ରକାର ବିଶେଷଣ ମଧ୍ୟ ବିଚାର କରାଯାଏ । ସଉରା ଭାଷାରେ ବିଶେଷଣର ବ୍ୟବହାର ବ୍ୟାପକ ଭାବରେ ଦେଖାଯାଏ ।

(1) **ନାମ ବିଶେଷଣ** — ଯେଉଁ ବିଶେଷଣ ପଦ ବିଶେଷ୍ୟ ପଦର ବା ସର୍ବନାମ ପଦର ଗୁଣ, ଅବସ୍ଥା, ସଂଖ୍ୟା, ପରିମାଣ ଆଦି ପ୍ରକାଶ କରେ, ତାହାକୁ ନାମ ବିଶେଷଣ କହନ୍ତି (ସର୍ବସାର ବ୍ୟାକରଣ) । ନିମ୍ନମତେ ଏହା ଦୁଇଭାଗରେ ବିଚାର କରାଯାଇଥାଏ ।

(a) ବିଶେଷ୍ୟର ବିଶେଷଣ—

ସୁନ୍ଦରୀ ସ୍ତ୍ରୀ — Langidum ansɔl ? (S)

Langi Boi (L)

ରକ୍ତ ବସ୍ତ୍ର — Je-e Kab (S)

Mia~m Kab (L)

ନୀଳ ଆକାଶ — Niedu ruaŋ (S)

Kuluj riaŋ (L)

ଅନ୍ଧ ବାଳିକା — Kadu ansɔlsei (S)

Kadu ansalsiyɔɿ (L)

(b) ସର୍ବନାମର ବିଶେଷଣ—

ତୁମେ ଦୁଷ୍ଟ — Aman ɔṭis (S)

Amɔn duai~ (L)

ସେମାନେ ମୂଢ଼ — Aniŋji ergɔlɔm (S)

Aninji ergalɔm (L)

ଆମ୍ଭେମାନେ ଦରିଦ୍ର — ɔnlen dolai (S)

Anlen dulai banaggi (L)

## (2) ଭାବ ବିଶେଷଣ—

ଏହାକୁ ଗୁଣବାଚଗରେ ବିଭକ୍ତ କରାଯାଏ । କେହି କେହି ଏହାକୁ ବର୍ଣ୍ଣନାତ୍ମକ ବୋଲି ମଧ୍ୟ କହିଥାଆନ୍ତି ।

## (a) ବିଶେଷଣର ବିଶେଷଣ—

ଯେଉଁ ବିଶେଷଣ ପଦ ଅନ୍ୟ ବିଶେଷଣ ପଦର ଗୁଣ, ଅବସ୍ଥା, ପରିମାଣ ପ୍ରଭୃତି ପ୍ରକାଶ କରେ, ତାହାକୁ ବିଶେଷଣର ବିଶେଷଣ କହନ୍ତି (ସବସାର ବ୍ୟାକରଣ) । ଯଥା :—

ଅତି ମନୋହର ପ୍ରକୃତି— Alaŋ Mɔi~dum pɔrkuṭin (S).

Aṭaramṭaman boi boi langa dɔman abirna.

ବଡ଼ ଦୁଷ୍ଟ ଝିଅ — ɔṭisɔdum aŋsel.

Boi boi duaŋidam aŋsalo sei

ନତାନ୍ତ ଛକ୍ତ ଫୁଲ — Kasaŋlidɔm aṭərba (S)

Boi boi iŋrbɔnsa ṭər.

## (b) ଅବ୍ୟୟର ବିଶେଷଣ—

ଯେଉଁ ବିଶେଷଣ ପଦ ଅବ୍ୟୟ ପଦର ଅର୍ଥକୁ ବିଶେଷ କରି ଦେଖାଏ, ତାହାକୁ ଅବ୍ୟୟର ବିଶେଷଣ କହନ୍ତି (ସବସାର ବ୍ୟାକରଣ) ।

ଯଥା :—

ମୋତେ ଲାଗିଲା ଠିକ୍ ଯେପରି ଗୋଟିଏ ଭୂତ ମୋ ଆଡ଼କୁ ଆସୁଥିଲା ।

Men deli-id sɔri yaŋgamṭe abɔikulba muŋve~ ayayɔṭi ɔmsɔi. (S)

Yen agan dilai egaŋle maŋbayen aboi kulman ayera iṭin amri (L).

(c) କ୍ରିୟା ବିଶେଷଣ—

ଯେଉଁ ବିଶେଷଣ ପଦ କ୍ରିୟାର ସମୟ, ସ୍ଥାନ, ପ୍ରକୃତି, ପରିମାଣ ପ୍ରଭୃତି ପ୍ରକାଶ କରେ, ତାହାକୁ କ୍ରିୟା ବିଶେଷଣ କହନ୍ତି ।

ଯଥା:—

ରାମ ଧୀରେ ଚାଲୁଛି— Ramɔn lirɔn lirɔn andiṭi (S).

Ramɔn lisa lisa andiṭin (L).

ଶିବ ଚଞ୍ଚଳ ଆସୁଛି— Shibn sig-gɔduŋ i~ṭəi (S).

Shibɔn umeŋ umɛŋ iraiṭin (L).

ଠେକୁଆଟି ବେଗରେ ପଳାଉଅଛି— Pɔnder rin rin yi~ɪṭe (S)

Panderan umɛŋ umɛŋ yirɛṭe (L)

ଦୀପଟି ମିଞ୍ଜି ମିଞ୍ଜି ଜଳୁଛି—Dipam aji aji gyeypṭi (S).

Dribiŋ ṭaɪ ṭar logi gepṭe. (L)

## (d) ବାକ୍ୟର ବିଶେଷଣ—

ଯେଉଁ ବିଶେଷଣ ପଦ ଗୋଟିଏ ବାକ୍ୟର ଅର୍ଥକୁ ବିଶେଷିତ କରେ, ତାହା ବାକ୍ୟର ବିଶେଷଣ । (ସର୍ବସାର ବ୍ୟାକରଣ)

ଯଥା :—

ଅବଶ୍ୟ ତୁମ୍ଭମାନଙ୍କୁ ଯିବାକୁ ହେବ ।

Yaŋgamdegam amben ailebege. (S)

Delei jɔnɔm ambin yirbin deṭena. (L)

ନିଶ୍ଚୟ ସେ ଦୋଷୀ ।

Nisai ani dusa. (S)

E~ga jɔnaŋden anin dusa. (L)

## (3) ସର୍ବନାମର ବିଶେଷଣ— **Sɔbɔrnum Jarel (S)**

ପୂର୍ବରୁ ସର୍ବନାମ ସଂପର୍କରେ ଆଲୋଚନା କରାଯାଇଛି । କେତେକ ସର୍ବନାମ ପଦ ବିଶେଷ୍ୟ ପଦକୁ ନିର୍ଦ୍ଦେଶ କଲେ ଏମାନଙ୍କୁ 'ସର୍ବନାମର ବିଶେଷଣ' କୁହାଯାଏ ।

ସମସ୍ତ ସମୟରେ ସର୍ବନାମ ପଦ ସହିତ 'ପରି', 'ମିତ', 'ମନ୍ତ' ପ୍ରଭୃତି ଯୁକ୍ତ ହୋଇଥାଏ । (ସର୍ବସାର ବ୍ୟାକରଣ)

ଯଥା: —

ସେପରି ଛିଅ— Eṭgam ansel. (S)

Anin ambhariṭ apasei. (L)

ଏମନ୍ତ ଗାଁ— Enegam agɔrjaŋ (S)

Enegoi agɔrjaŋ (L)

ଏପର ଦିନ— Enegam aṭinə. (S)
—— Enegai adina (L)

କେତେକ ବିଶେଷ୍ୟ ପଦ କ୍ରିୟା ପଦରୁ ଉତ୍ପନ୍ନ ହୋଇଥାଆନ୍ତି । (ସବସାର ବ୍ୟାକରଣ)

ଯଥା—

ଉଡ଼ନ୍ତା ଚଢ଼େଇ— Anabeŋ ɔnṭiṭ (S)

E~gda anṭiṭ (L)

ଚଳନ୍ତା ଗାଡ଼ି— Aya~na bɔŋgaṭ (S)

Aya~na gal L)

ଜଳନ୍ତା କାଠ— Ageb angɔl (S)

Ageyep aŋg (L)

ଖାଇଲ ଭାତ— Agɔraga Kul (S)

Aŋgaṭen adaren (L)

ସ୍ଥଳ ବିଶେଷରେ ବିଶେଷ୍ୟ ପଦ ମଧ୍ଯ ବିଶେଷଣ ପଦରୂପେ ବ୍ୟବହୃତ ହୋଇଥାଏ (ସବସାର ବ୍ୟାକରଣ) ।

ଯଥା—

ଶୀତ ଦିନ— Dranga eŋ (S)

Rɔngan ayam (L)

ଖରା ଦିନ— Daga ɛŋ (S)

Dagan ayɔm (L)

| | |
|---|---|
| ବର୍ଷା କାଳ— | Gɔnu riŋ (S) |
| | Gɔnur dina (L) |
| ସୁନା ମାଳ— | Rɔna ṭŋ (S & L) |
| | Rɔnana aṭɔngɔm (L) |
| ଲୁହା କଣ୍ଟା— | Lɔaŋ eb (S) |
| | Luaŋ eb (or ib) (L) |

(4) **ନିର୍ଦ୍ଧାରକ ବିଶେଷଣ—**

ନିର୍ଦ୍ଦିଷ୍ଟ ଭାବ, ବସ୍ତୁ ଓ ବ୍ୟକ୍ତିର ବର୍ଣ୍ଣନା ନକରି ଏସବୁକୁ ଯେଉଁ ବିଶେଷଣ କେବଳ ନିର୍ଦ୍ଦେଶ କରିଥାଏ, ତାହାକୁ ନିର୍ଦ୍ଧାରକ ବିଶେଷଣ କୁହାଯାଏ । ସାଧାରଣ ଭାବରେ ଏହାକୁ ନିର୍ଦ୍ଦେଶାତ୍ମକ, ପ୍ରଶ୍ନବାଚକ, ସଂଖ୍ୟାବାଚକ ଓ ପରିମାଣ ବାଚକ ଭାବରେ ବ୍ୟବହାର କରାଯାଇଥାଏ ।

(a) **ନିର୍ଦ୍ଦେଶାତ୍ମକ ବିଶେଷଣ—**

| | |
|---|---|
| ଏହା, ଏହିଟା — | Kɔni, Kani (S&L) |
| ସେହି, ସେଇଟା— | Kɔṭe (S), Kuni (S&L) |
| ତାହା— | Kun (S), ɔnṭe (L) |
| ଏହି ବୃକ୍ଷ— | Kɔn aneb (S), Kɔni aneb (L) |
| ସେହି ପିଲାଗୁଡ଼ିକ — | Kun apasiji (S)<br>Kuni apsiji (L) |

(b) **ପ୍ରଶ୍ନବାଚକ anualbir (L)—**

ଏହାକୁ ଅନିର୍ଦ୍ଦିଷ୍ଟ, ନିର୍ଦ୍ଦିଷ୍ଟ ଓ ପରିମାଣ ଭେଦରେ ୩ ପ୍ରକାର ଭାବରେ ବ୍ୟବହାର କରାଯାଏ ।

(i) **ଅନିର୍ଦ୍ଦିଷ୍ଟ ersɔri—(S), irgɔlɔm (L)?—**

କେଉଁଟି ? — Uan ? (S&L)

କେଉଁଠି ? – Uaŋ ? (S) ɔngan (L)

(ii) **ନିର୍ଦ୍ଦିଷ୍ଟ Sɔri?, Sɔrigɔe (L)—**

କଣ କଣ ? — Iṭiŋ iṭiniŋ (S), iṭin iṭin (L)
କଣ ? — Iṭen, iṭin (s), iṭin (L)
କଣରେ ? — Iṭen gai (S), iṭiliŋ (L)

(iii) **ପରିମାଣ Pɔrmai (S), dejiŋ or ateŋ (L)—**

କେତେ ? — Dia~, dakəŋ (S)
Dejiŋ (L)

(c) **ସଂଖ୍ୟା ବାଚକ Sɔŋkɔŋliŋ (S)—**

ଏକ — Abɔi, aboi (S&L)
ଦୁଇ — Bago (S), Bagu (L)
ତିନି — Yagi (S)
ଚାରି — Punji (S), Unji (L)
ପାଞ୍ଚ — Mɔnlɔe (S), Mɔnloi (L)
ଛଅ — ṭur ru (S&L)
ସାତ — Gulji (S&L)
ଆଠ — Tɔmji, Tamji (S&L)
ନଅ — Tinji (S&L)
ଦଶ — Gɔlji (S), Galji (L)
ଏଗାର — Mi~l (S), galmui (L)
ବାର — Mu~il (S), Migal (L)
ତେର — Yail (S), Migal-boi (L)

ଷୋଳ — Uil (S), Migal-bagu (L)

ପନ୍ଦର — Mɔel (S), Migal Yagi (L)

ଷୋହଳ — Tuil (S), Migal-Unji (L)

ସତର — Gail (S), Migal Manloi (L)

ଅଠର — Pail (S), Migal-tur-ru (L)

ଊଣେଇଶ — Ti-il (S), Migal-gulji (L)

କୋଡ଼ିଏ — ବାଲ୍ (S), Bokodi (L)

ତିରିଶ — Yal (S), Bɔkodi galji (L)

ଚାଳିଶ — Ul (S), Bakodi (L)

ପଚାଶ — Mɔl (S), Bakodi-galji (L)

ଷାଠିଏ — Tul (S), Yakodi (L)

ସତୁରି — Gul (S), Yakodi-galji

ଅଶି — Tal (S), Unji-kodi (L)

ନବେ — Til (S), Unji-kodi-galji (L)

ଶହେ — Al (S), Bɔsɥa (L)

ଉପରୋକ୍ତ ସଂଖ୍ୟା ଗୁଡ଼ିକରେ 'ଏଗାର'ଠାରୁ 'କୋଡ଼ିଏ' ଓ ତାହାର ପରବର୍ତ୍ତି ସଂଖ୍ୟାଗୁଡ଼ିକ ଶୁଦ୍ଧ ସଉରା ଭାଷାରେ ନିର୍ଦ୍ଦିଷ୍ଟ ଶବ୍ଦରେ ପରିପ୍ରକାଶ ହେଉଥିବା ବେଳେ, ଲାଞ୍ଜିଆ ସଉରା ଭାଷାରେ 'ବାର' ସଂଖ୍ୟା ଯାଏଁ ନିର୍ଦ୍ଦିଷ୍ଟ ଶବ୍ଦ ବ୍ୟବହାର କରାଯାଇ ପରବର୍ତ୍ତୀ ସଂଖ୍ୟାଗୁଡ଼ିକ 'ବାର + ଏକ', 'ବାର + ଦୁଇ' ଏହିପରି 'ବାର'ର ମିଶ୍ର ସଂଖ୍ୟା ଭାବରେ ଗଣନା କରାଯାଇଥାଏ । 'କୋଡ଼ିଏ' ପରେ ମଧ୍ୟ ଠିକ୍ ଏହି ଭାବରେ ମିଶ୍ର ଶବ୍ଦମାନଙ୍କୁ ନେଇ ଗଣନା କରାଯାଇଥାଏ ।

(d) ପରିମାଣାତ୍ମକ **Pɔrma~i/Plamɔt (S)**—

୪୦ କିଲୋଗ୍ରାମ ପରିମାଣ ଗୃହଭିତ

Ul-Keji Pɔrma~i runko (S).

Bakudi Keji runkun (L)

ଆଠ ଘାଟୁ ତେଲ୍ଲିକ

ṭamji ṭɔnudi ṭ'ṭin (S)

ṭamji paṭu ṭiṭin (L)

ବୋଟେଁ ଙଜୁଷ୍ଟି— Bogenṭra (or bɔjidi) sindi (S)

Bɔpenṭra sindi (L)

ସବୁ ଲୋକ— Sɔdi mɔndra (S&L)

Kudub mɔndra (L)

କେତେକ ପକ୍ଷୀ— Dijiŋ ɔnṭiṭ (S)

Dejiŋ ɔnṭiṭ (L)

—※—

# ଲିଙ୍ଗ GENDER

## Liŋ (S)

ବିଶେଷ୍ୟ ଶବ୍ଦମାନଙ୍କୁ ଅନୁଧ୍ୟାନ କଲେ, ତନ୍ମଧ୍ୟରୁ କେତେକ ପୁରୁଷ ଜାତୀୟ ପ୍ରାଣୀ, କେତେକ ସ୍ତ୍ରୀ ଜାତୀୟ ପ୍ରାଣୀ ଓ କେତେକ ଅପ୍ରାଣୀ ବାଚକ ଶବ୍ଦକୁ ବୁଝାନ୍ତି । ଏହି ଭେଦ ଅନୁସାରେ ବିଶେଷ୍ୟର ୩ ପ୍ରକାର ଲିଙ୍ଗ, ଯଥା:— ପୁଂ ଲିଙ୍ଗ, ସ୍ତ୍ରୀ ଲିଙ୍ଗ ଓ କ୍ଲୀବ ଲିଙ୍ଗର ବିଚାର କରାଯାଇଥାଏ । ମାତ୍ର ଉଭୟ ସଉରା ଭାଷାରେ ବିଶେଷ୍ୟ ଓ ସମାପିକା କ୍ରିୟା, କର୍ତ୍ତାର ଲିଙ୍ଗ ଅନୁସାରେ ପରିବର୍ତ୍ତିତ ହୋଇ ନଥାନ୍ତି । ଏହା ସାଧାରଣତଃ ଶବ୍ଦଗତ ହୋଇଥାଏ ।

ସଉରା ଭାଷାରେ କେତେକ କ୍ଷେତ୍ରରେ ସ୍ୱତନ୍ତ୍ର ଶବ୍ଦ ପ୍ରୟୋଗ, କେତେକ କ୍ଷେତ୍ରରେ ବର୍ଣ୍ଣନାତ୍ମକ ଶବ୍ଦ ପ୍ରୟୋଗ ଓ ଅନ୍ୟ କେତେକ କ୍ଷେତ୍ରରେ ପ୍ରତ୍ୟୟ ବ୍ୟବହାର ହୋଇ ଲିଙ୍ଗ ପ୍ରଭେଦ ଦର୍ଶାଯାଇଥାଏ । 'ସବସାର ବ୍ୟାକରଣ'ରେ ପୁଂ ଲିଙ୍ଗ ବାଚକ ଶବ୍ଦକୁ ତିନି ପ୍ରକାର ଉପାୟରେ ସ୍ତ୍ରୀ ଲିଙ୍ଗ ବାଚକ ଶବ୍ଦରେ ପରିଣତ କରାଯିବାର ଦୃଷ୍ଟାନ୍ତ ଦିଆଯାଇଛି—

ଯଥା :- –(୧) ପୁଂ ଲିଙ୍ଗ ବାଚକ ଶବ୍ଦରେ ଭିନ୍ନ ଭିନ୍ନ ପ୍ରତ୍ୟୟ ଦ୍ୱାରା ।

(୨) ଭିନ୍ନ ଶବ୍ଦର ବ୍ୟବହାର ଦ୍ୱାରା ।

(୩) ପୁଂ ଲିଙ୍ଗ ବାଚକ ଶବ୍ଦର ପୂର୍ବେ ବା ପରେ ସ୍ତ୍ରୀ ବାଚକ ଶବ୍ଦ ଯୋଗ କରିବା ଦ୍ୱାରା ।

### (1) ସ୍ୱତନ୍ତ୍ର ଶବ୍ଦ ପ୍ରୟୋଗ ଦ୍ୱାରା :—

| | |
|---|---|
| ବାପା— Waŋ (S&L) | ମାଆ— Yaŋ (S&L) |
| ସ୍ୱାମୀ— Jɔnaṭa (S)<br>ṭɔnŋba (L) | ସ୍ତ୍ରୀ— Janasi (S)<br>Dukri, ɔnsɔl (L) |
| ପୁଅ— ɔɔŋ (S)<br>angerɔn (L) | ଝିଅ— Slɔɔŋ (S)<br>Insalɔɔn (L) |
| ଅଜା— Jujuŋ (S&L) | ଆଈ— Yuyuŋ (S&L) |
| ଭାଇ— Ubba (S)<br>Ubaŋ (L) | ଭଉଣୀ— Yayi, tɔnaŋ (S)<br>Aiŋ (L) |
| ହରିଣ— Pɔrɔgdab (S&L) | ହରିଣୀ— Alip (S&L) |

(2) **ବର୍ଣ୍ଣନାତ୍ମକ ଶବ୍ଦ ଦ୍ୱାରା :—**

| | | | |
|---|---|---|---|
| ଘୋଡ଼ା— | Kurṭa (S&L) | ଘୋଡ଼ୀ— | Yaŋkur,<br>Ayaŋkur (S&L) |
| କୁକୁର— | Kun-chɔṭ (S&L) | କୁତୀ— | Ayaŋ-chɔt (S&L) |
| ବାଘ— | Kunna (S)<br>Kinna (L) | ବାଘୁଣୀ— | Ayaŋ-Kunna (S)<br>Ayəŋ-Kuṭ (S)<br>Ayaŋ-Kiṭ (L) |
| ଅଣ୍ଡିରା ଛେଳି— | Kummet (S)<br>Kimmen (L) | ମାଈ ଛେଳି— | Ayaŋ-Kummet (S)<br>Ayaŋ-me ? (L) |
| ମେଣ୍ଢା— | Mendha-me~ (S)<br>Murkund-da (L) | ମେଣ୍ଢି— | Landi-me~ (S)<br>Murkunda-me~ (L) |
| ଘୁଷୁରି — | Kɔm buŋ (S&L) | ମାଈ ଘୁଷୁରି — | Ayaŋ-bon (S&L) |
| ଗଞ୍ଜା— | Kɔmsim (S&L) | କୁକୁଡ଼ା— | Ayəŋ-sim (S&L) |
| ରାଜହଂସ— | Gmaŋpar (S) | ରାଜହଂସୀ— | Gmiŋpar (S) |
| ହଂସ— | Papara (S)<br>Kapara (L) | ହଂସୀ— | Ansel-Papara (S)<br>Ansel-Kapara (L) |
| ମୟୂର— | Mara (S&L) | ମୟୂରୀ— | Ayəŋ-mar (S&L) |

ସଉରା ଭାଷାରେ କେତେକ କ୍ଷେତ୍ରରେ ପ୍ରତ୍ୟୟ ଯୋଗ ଦ୍ୱାରା ପୁରୁଷ ଓ ସ୍ତ୍ରୀ ପ୍ରଭେଦ ନିର୍ଣ୍ଣୟ କରାଯାଇଥାଏ ।

ପୁରୁଷ ପାଇଁ— /-mar/ ଓ ସ୍ତ୍ରୀ ପାଇଁ / bɔy/ or /-boi/boi/

ଯଥା:—

ଡାକ୍ତର— Regɔm-mar (S&L)
ଡାକ୍ତରାଣୀ— Regɔm-bɔy (S&L)
ନର୍ତ୍ତକ— tɔŋseŋ-mar
ନର୍ତ୍ତକୀ — tɔŋseŋ bɔy
ପୁରୁଷ-ଗୁଣିଆ— Kudan-mar (S&L)

| | |
|---|---|
| ସ୍ତ୍ରୀ-ଗୁଣିଆ— | Kudan-bɔy (S&L) |
| ସାଆନ୍ତ— | Baramar (S), Susaramar (L) |
| ସାଆନ୍ତାଣୀ— | Bara-bɔy (S), Susarabɔy (L) |
| ଗୃହୀ— | Ɔr-rɔmar (S), Ɔrromar (L) |
| ଗୃହୁଣୀ— | Ɔr-rɔbɔy (S), Ɔrrobɔy (L) |

ସଉରା ଭାଷାରେ ଏପ୍ରକାର /maɪ/ଓ/bɔy/କମ୍ବା/boi/ ପ୍ରତ୍ୟୟ-ଯୋଗ ବହୁଳ ଭାବରେ ଦେଖାଯାଏ । ଏହା ବ୍ୟତୀତ ଭିନ୍ନ ପ୍ରତ୍ୟୟ ଯୋଗରେ ମଧ୍ୟ ଲିଙ୍ଗ ପରିବର୍ତ୍ତନ ହୋଇଥାଏ ।

ଯଥା—

ପ୍ରତ୍ୟୟ— /-i/

ମାମୁଁ— Mamaŋ (S&L)
ମାଇଁ— Mamiŋ (S), Awaŋ (L)
ଭାଇ— Buyaŋ (S&L)
ଭଉଜ— Buniŋ (S&L)
ଶ୍ୱଶୁର— Mamaŋ (S), Kuyaŋr (L)
ଶାଶୁ— Mamiŋ (S), Kinar (L)

ପ୍ରତ୍ୟୟ— /-sel/

ଭଣଜା—Mɔnsix (S)
Amɔŋsi, Amosai (L)
ଭଣିଜ— Mɔnsel (S)
Amɔŋsel, Amolsel (L)
ନାତି— Uṭleŋ (S), Uleŋ (L)
ନାତୁଣୀ—Uṭleŋsel (S), Inslɔ-Uleŋ (L)

କେତେକ କ୍ଷେତ୍ରରେ ଗୋଟିଏ ଶବ୍ଦରେ ଶୁଦ୍ଧ ସଉରା ଭାଷାରେ ଏକ ପ୍ରକାର ପ୍ରତ୍ୟୟ ବ୍ୟବହାର ହେଉଥିଲା ବେଳେ, ଲାଞ୍ଜିଆ ସଉରା ଭାଷାରେ ଅନ୍ୟ ପ୍ରକାର ପ୍ରତ୍ୟୟ ବ୍ୟବହାର ହୋଇଥାଏ ।

ଯଥା :—

ମୋଟା— Doka (S)
Jeljel (L)

ମୋଟୀ— Doki (S)
Jeljel-boi (L)

ଏଠାରେ ଶୁଦ୍ଧ ସଉର ଭାଷାରେ /-i/ ପ୍ରତ୍ୟୟ ବ୍ୟବହୃତ ହୋଇଥିଲା ବେଳେ ଲଞ୍ଜିଆ ସଉର ଭାଷାରେ /-boi/ ପ୍ରତ୍ୟୟ ବ୍ୟବହାର ହୋଇଛି ।

## (3) କ୍ଲୀବ ଲିଙ୍ଗ, Gɔnliŋ (S)

| | |
|---|---|
| ବୃକ୍ଷ— | Aneb (S&L), Ara (S&L) |
| ବାଟ— | ṭangor (S&L) |
| ଡଙ୍ଗା— | Dunga (S&L) |
| ପର୍ବତ— | Bɔru (S&L) |
| ବିଲ— | Shrba (S&L) |
| ଗ୍ରାମ— | Gɔrjaŋ (S&L) |

## (4) ବିଶେଷଣ ଓ ସର୍ବନାମର ଲିଙ୍ଗ —

ସ୍ତ୍ରୀ ଲିଙ୍ଗ ବାଚକ କେତେକ ବିଶେଷଣରେ ସ୍ତ୍ରୀ ଲିଙ୍ଗ ସୂଚକ ଚିହ୍ନ ଦେଖାଯାଇଥାଏ । ସେହିପରି ସର୍ବନାମ ପଦ ମଧ୍ୟ ଯେଉଁ ବିଶେଷ୍ୟ ପଦର ପରିବର୍ତ୍ତିରେ ବ୍ୟବହୃତ ହୋଇଥାଏ, ସେହି ବିଶେଷ୍ୟ ପଦର ଲିଙ୍ଗ ଗ୍ରହଣ କରେ (ସର୍ବସାର ବ୍ୟାକରଣ) । ନିମ୍ନରେ ବିଶେଷଣର ଲିଙ୍ଗସୂଚକ ଏକ ଦୃଷ୍ଟାନ୍ତ ଦିଆଯାଉଛି ।

| | |
|---|---|
| ସୁନ୍ଦରୀ ସ୍ତ୍ରୀ— | Langidum ɔnsɔl? (S)<br>Langi-boi (L) |
| (ସୁନ୍ଦର ପୁଅ— | Langadum ɔnger) |
| ସୁନ୍ଦର— | Langidɔm (S) |
| ଅତି ସୁନ୍ଦର ଅର୍ଥରେ— | Langidum (S) |

—*—

## ବଚନ, NUMBER
## Bir(s), Danisam(L)

ଯାହାଦ୍ୱାରା ବସ୍ତୁର ବା ବ୍ୟକ୍ତିର ସଂଖ୍ୟା ଜଣାପଡ଼େ, ତାହାକୁ 'ବଚନ' କହନ୍ତି (ସଂସାର ବ୍ୟାକରଣ) । ବସ୍ତୁର ବା ବ୍ୟକ୍ତିର ସଂଖ୍ୟା ଏକ ହେଲେ ତାହା ଏକବଚନ ଓ ଏକରୁ ଅଧିକ ହେଲେ ତାହା ବହୁବଚନ ହୁଏ ।

ସଉରା ଭାଷାରେ ମୁଖ୍ୟତଃ ଏକବଚନ ଓ ବହୁବଚନର ରୂପ ପ୍ରକାଶ ଦେଖାଯାଏ । ଦ୍ୱିବଚନରେ ଦ୍ୱିବୋଧକ ଶବ୍ଦ ସଂଯୋଗ କରିବାକୁ ପଡ଼ିଥାଏ । ସଉରା ଶବ୍ଦ ଗୁଡ଼ିକର ଏକବଚନ ଓ ବହୁବଚନ ରୂପକୁ ଅନୁଧ୍ୟାନ କଲେ କେତେକ କ୍ଷେତ୍ରରେ ମନୁଷ୍ୟ ଜାତୀୟ ଶବ୍ଦଗୁଡ଼ିକର ବହୁବଚନ ରୂପ ମନୁଷ୍ୟେତର ପ୍ରାଣୀମାନଙ୍କ ରୂପଠାରୁ ଭିନ୍ନ ହେବାର ଦେଖାଯାଏ । ସେହିପରି ନିର୍ଜୀବ ବା ଅପ୍ରାଣୀ ପଦାର୍ଥଗୁଡ଼ିକର ବହୁବଚନ ରୂପ ସାଧାରଣତଃ ବହୁତ୍ୱବୋଧକ ଶବ୍ଦ ଯୋଗ ଦ୍ୱାରା ପରିପ୍ରକାଶ ହୋଇଥାଏ ।

### (1) ମନୁଷ୍ୟ ବିଶେଷ ପ୍ରାଣୀ :—

| ଏକ ବଚନ | ବହୁ ବଚନ |
|---|---|
| **Bɔbir (S)** | **Labir (S)** |
| **Aboi (L)** | **Alagapber (L)** |
| ମନୁଷ୍ୟ— Mɔndra (S&L) | ମନୁଷ୍ୟମାନେ— Mɔndraŋji (S&L) |
| ପୁରୁଷ— Anger (S&L) | ପୁରୁଷମାନେ— Angerenji (S&L) |
| ସ୍ତ୍ରୀ— Ɔnselɔ (S&L) or Anselɔ (S&L) | ସ୍ତ୍ରୀମାନେ— Ɔnselɔnji (S&L) or Anselɔnji (S&L) |
| ମାଆ— Yaŋ (S&L) | ମାଆମାନେ— Yaŋji (S&L) |
| ବାପା— Waŋ (S&L) | ବାପାମାନେ— Waŋji (S&L) |
| ଭଉଣୀ— Buniŋ (S&L) | ଭଉଣୀମାନେ— Buninji (S&L) |
| ଭାଇ— Buyaŋ (S&L) | ଭାଇମାନେ— Buyaŋji (S&L) |

ଉପରୋକ୍ତ ମନୁଷ୍ୟ ଜାତୀୟ ବିଶେଷ୍ୟ ଶବ୍ଦମାନଙ୍କରେ ବହୁବଚନ ରୂପରେ କେବଳ/ -ji / ବା / -aniŋji / ଲଗିଛି ।

## (2) ମନୁଷ୍ୟେତର ପ୍ରାଣୀ:—

ଏଠାରେ କେତେକ କ୍ଷେତ୍ରରେ / ji/ ଲଗି ବହୁବଚନ ରୂପ ପ୍ରକାଶିତ ହେଲାବେଳେ ଅନ୍ୟତ୍ର ଭିନ୍ନ ପ୍ରତ୍ୟୟ ଲଗିଥାଏ ।

ଯଥା :—

| | | | |
|---|---|---|---|
| ଚଢ଼େଇ— | Anṭiṭ (S&L) | ଚଢ଼େଇମାନେ— | Anṭiṭ jakiŋ (S)<br>Anṭiṭji (L) |
| କଙ୍କଡ଼ା— | Kinnad (S&L) | କଙ୍କଡ଼ାମାନେ— | Kinnadaŋji (S&L) |
| ଭାଲୁ— | Salua (S&L) | ଭାଲୁମାନେ— | Saluan jakiŋ (S)<br>Aṭeŋ salua (L) |
| ବଗ— | Kɔŋkɔda (S&L)<br>kɔ-ɔdɔn (L) | ବଗମାନେ— | Kɔŋkɔdanji (S&L)<br>Kɔ-adɔnji (L) |
| ହଂସ— | Papara (S)<br>Kapara (L)<br>or (ɔngɔs (L)) | ହଂସଗୁଡ଼ାକ— | Paparanji (S)<br>Kaparanji (L)<br>or (ɔngɔsɔnji (L)) |
| ସାପ— | Ja-adɔn (S&L) | ସାପଗୁଡ଼ାକ— | Ja-adɔnji (S&L) |

## (3) ଅପ୍ରାଣୀ ବାଚକ ଶବ୍ଦ :—

| | | | |
|---|---|---|---|
| ବସ୍ତ୍ର— | Bɔŋgɔṭ (S)<br>Basu (L) | ବସ୍ତ୍ରଗୁଡ଼ିକ— | Bɔŋgɔṭ jakiŋ (S)<br>Aṭeŋ basu (L) |
| ଘର— | Siŋ-iŋ (S)<br>Suŋ (L) | ଘରଗୁଡ଼ିକ— | Siŋ-iŋ jakiŋ (S)<br>Siŋnganji (L) |
| କଲମ— | Ripan (S)<br>Aridɔl (L) | କଲମଗୁଡ଼ିକ— | Ripan jakiŋ (S)<br>Aridɔlanji (L) |

## (4) ଦ୍ୱିବଚନ ଶବ୍ଦ :

ମନୁଷ୍ୟ ଦୁହେଁ— Bagu Mɔndra (S&L)
ବସ୍ତ୍ର ଦୁଇଟି— Bagu Rɔme~ (S), Bagu Rɔmeŋ (L)
ଘର ଦୁଇଟି— Bagu si-iŋ (S), Bagu Suŋ (L)

—※—

# ପୁରୁଷ, PERSON

## Puraŋ (S)

ପୂର୍ବରୁ 'ସର୍ବନାମ' ସମ୍ପର୍କରେ ଆଲୋଚନା କଲାବେଳେ 'ପୁରୁଷ' ସମ୍ପର୍କରେ ସଂକ୍ଷିପ୍ତ ଆଲୋକପାତ କରାଯାଇଥିଲା ।

ନିଜକୁ ବ୍ୟକ୍ତ ବା ପ୍ରକାଶ କଲାବେଳେ 'ମୁଁ' 'ଆମ୍ଭେ' 'ଆମ୍ଭେମାନେ' ଇତ୍ୟାଦି ଶବ୍ଦ ସାଧାରଣତଃ ବ୍ୟବହାର କରାଯାଇଥାଏ । ସେହିପରି ଅପରକୁ ସମ୍ବୋଧନ କଲାବେଳେ 'ତୁ', 'ତୁମ୍ଭେ', 'ତୁମ୍ଭେମାନେ' ଇତ୍ୟାଦି ଶବ୍ଦ ବ୍ୟବହାର କରାଯାଇଥାଏ । ପ୍ରଥମ ଶ୍ରେଣୀର ଶବ୍ଦଗୁଡ଼ିକ ପ୍ରଥମ ପୁରୁଷ ଓ ଦ୍ୱିତୀୟ ଶ୍ରେଣୀର ଶବ୍ଦଗୁଡ଼ିକ ଦ୍ୱିତୀୟ ପୁରୁଷ ହୁଏ । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ସର୍ବନାମ ପଦ ଯଥା—ସେ, ଯେ, କିଏ, ଏହା, ତାହା, ସେମାନେ, ଯେଉଁମାନେ ଇତ୍ୟାଦି ଓ ଯାବତୀୟ ବିଶେଷ୍ୟ ପଦର ତୃତୀୟ ପୁରୁଷ ହୋଇଥାଏ ।

### (1) ପ୍ରଥମ ପୁରୁଷ, Urṭamɔnpuraŋ (S)

| ଏକ ବଚନ, Bɔbir (S) | ବହୁ ବଚନ, Labir (S) |
|---|---|
| ମୁଁ | ଆମ୍ଭେମାନେ |
| ñen (S&L) | Mɔnlen (S)<br>anlen (L) |

### (2) ଦ୍ୱିତୀୟ ପୁରୁଷ, ṭɔrṭamɔn Puraŋ (S)

| ଏକ ବଚନ, Bɔbir (S) | ବହୁ ବଚନ, Labir (S) |
|---|---|
| ତୁ, ତୁମ୍ଭେ | ତୁମ୍ଭେମାନେ |
| Mɔn, amɔn (S)<br>Mɔn, ambin (L) | Ambinji (S&L) |
| ଆପଣ | ଆପଣମାନେ |
| Amɔn (S)<br>Ambin (L) | Ambinji (S&L) |

(3) ତୃତୀୟ ପୁରୁଷ, **Yaryaŋ Puraŋ**

| | | |
|---|---|---|
| ସେ | — | Anin (S&L) |
| ସେମାନେ | — | Aninji (S&L |
| ସେ, ଯିଏ | — | Buṭin (S&L) |
| ଏହା, ଏହି | — | Kɔn, Kɔni (S&L) |
| ତାହା | — | K̄ɔṭ Kun, Kɔṭe (S)<br>Anṭə (L) |
| କିଏ | — | Buṭin (S&L) |
| ରାମ | — | Ramɔn (S&L) |
| ହରି | — | Harin (S&L) |

—※—

## କାରକ, CASE

### ṭnal (S)

ବାକ୍ୟ ମଧ୍ୟରେ କ୍ରିୟା ସହିତ ପଦର ସମ୍ବନ୍ଧକୁ 'କାରକ' କହନ୍ତି (ସର୍ବସାର ବ୍ୟାକରଣ) । ଏହି ସମ୍ବନ୍ଧ ଛଅ ପ୍ରକାର ହୋଇପାରେ । ଏହି ଅନୁସାରେ କାରକ ଛଅ ପ୍ରକାର ହୁଏ ;
ଯଥା— କର୍ତ୍ତା କାରକ, କର୍ମ କାରକ, କରଣ କାରକ, ସମ୍ପ୍ରଦାନ କାରକ, ଅପାଦାନ କାରକ ଓ ଅଧିକରଣ କାରକ ।

(1) **କର୍ତ୍ତା କାରକ, ṭubeŋ ṭnal** (S)

ଯେ କ୍ରିୟା ସମ୍ପାଦନ କରେ ବା କରାଏ ତାହାର କର୍ତ୍ତା କାରକ ହୁଏ (ସର୍ବସାର ବ୍ୟାକରଣ) । କର୍ତ୍ତା ମୁଖ୍ୟ ବା ପ୍ରକୃତ୍ୟ ଓ ପ୍ରଯୋଜକ ହୋଇପାରେ । ଦୃଷ୍ଟାନ୍ତ : —

ଲୁଲର ଶବର ବଣକୁ ଗଲା ।

Kular Sabɔrɔn gaṭan nieṭin (S)

Kular Sabɔrɔn ṭolabaŋ iyeṭin (L)

ଜଗନ୍ନାଥ ସଂସାରର ରକ୍ଷକ ।

Jɔgɔnnathɔ sɲsarsɔ'na rɔɲnamɔr

Jɔgɔnnathɔ ɔdarɔn anɔblo mɔr.

ଏଠାରେ 'କୁଲର ଶବର' ଓ 'ଜଗନ୍ନାଥ' ମୁଖ୍ୟ ବା ପ୍ରକୃତ୍ୟ କର୍ତ୍ତା ଭାବରେ କାର୍ଯ୍ୟ ସମ୍ପାଦନ କରୁଥିବାରୁ 'କର୍ତ୍ତା କାରକ' ଅଟନ୍ତି । ମାତ୍ର କର୍ତ୍ତା ନିଜେ ସିଧାସଳଖ କୌଣସି କାର୍ଯ୍ୟ ନ କରି ଅନ୍ୟଦ୍ୱାରା କରାଇଲେ ତାହା ପ୍ରଯୋଜକ ବା ହେତୁ କର୍ତ୍ତା ହୋଇଥାଏ ।

ଯଥା :—

ଜଗନ୍ନାଥଙ୍କ ଦ୍ୱାରା ସଂସାର ପାଳିତ ହୁଏ ।

Jɔgɔnnathɔ abɔṭu ? Sɔɲsarɔɲ palɔṭɔɲṭeṭ

ବିଶେଷ୍ୟ, ସର୍ବନାମ କିମ୍ବା ବିଶେଷଣ ରୂପେ ବ୍ୟବହୃତ ଯେ କୌଣସି ପଦ ବା ସମଷ୍ଟି ବାକ୍ୟରେ କର୍ତ୍ତା ହୋଇ ପାରନ୍ତି (ସର୍ବସାର ବ୍ୟାକରଣ) ।

ଯଥା :—

**ବିଶେଷ୍ୟ, Jaribil (S) :**

ପକ୍ଷୀଟି ଗଛରେ ବସିଛି :— Anṭidɔn araliɲ gᶜpseṭe (S)

Anṭidɔn araleɲgan gɔbbeṭin (L).

**ସର୍ବନାମ, Sabarnum (S) :—**

ମୁଁ କାଲି ଆଦୌ ପଢ଼ି ନଥିଲି ।

ñen rubɔn ɔji ṭaj ɔyɲlenai (S).

ମୁଁ ଗତକାଲି ଗଲିନାହିଁ ।

ñen ruban iraniy (L).

**କୃଦନ୍ତ :**

ତାର ଗୃଲ ବଡ଼ ସୁନ୍ଦର ।

Anin Ayanɛŋ dɔbudɔm (S).

Anin ayənaŋ boi boi langadɔm (L).

**ଖଣ୍ଡ ବାକ୍ୟ, Daina Beɔr (S), Ansetbir (L)**

ସେ ଆଜ ଆସିବେ କ ନାହିଁ ପାଗ ଉପରେ ନିର୍ଭର କରେ ।

Anin lami iṭe nai~ pɔeja.

Anin nɔmi yirtai ɔde ijja; bɔŋsa uyongan baṭi gɔlɔmṭabi.

**ବାକ୍ୟାଂଶ, Bera-iŋsɔ (S), ṭɔṭubɔn (L)**

ଦାଲୁଙ୍କର ହସିବା କାନ୍ଦିବା ଜଣାପଡେ ନାହିଁ ।
Kupulinṭe amɔnaŋ ayedana jɔnaja adaye ? (S)
Kurpeji bɔjan manaŋ edana agalambir. (L)

——❊❊❊❊——

## କର୍ମକାରକ

**Banɔŋ ṭnal (S), Baralɔnum (L)**

କର୍ତ୍ତାର ଈପ୍‌ସିତତମ ପଦାର୍ଥ ତଥା ଅନୀପ୍‌ସିତ ପଦାର୍ଥର 'କର୍ମ କାରକ' ହୁଏ । (ସବସାର ବ୍ୟାକରଣ)

ଯଥା:—

ମା ଦୁର୍ଗା ମହିଷାସୁରକୁ ମାରିଥିଲେ ।

Durgaŋyɔŋ yŋbŋsurɔ nɔ tukhabete. (S)

Yɔŋ Durga mɔhisasurɔ adɔŋ kɔbyi deṭen. (L)

ଶିକ୍ଷକ ଛାତ୍ରକୁ ଦଣ୍ଡ ଦେଇଥିଲେ ।

Madira(or yɔŋyɔŋmar) yɔŋna seidɔŋ dɔndɔŋ ḍieṭe(S).

Yɔŋyɔŋmarɔn yɔgnasija-an adɔŋ pɔnar-rɔdɔn (or pɔd-drɔ) deiṭin. (L)

ଉପରୋକ୍ତ ବାକ୍ୟ ଗୁଡ଼ିକରେ ଦୁଇଟି କର୍ମର ବ୍ୟବହାର ଦେଖାଯାଇଛି । ପ୍ରଥମ ବାକ୍ୟରେ 'ମହିଷାସୁରକୁ' । ଏହି ପଦଟି ମୁଖ୍ୟ କର୍ମ ଭାବରେ ବ୍ୟବହୃତ । ମାତ୍ର ପରବର୍ତ୍ତୀ ବାକ୍ୟରେ 'ଛାତ୍ରକୁ' ଓ 'ଦଣ୍ଡ' ଏହି ଦୁଇଟି ପଦ ମଧ୍ୟରୁ 'ଦଣ୍ଡ' ମୁଖ୍ୟ କର୍ମ ଓ 'ଛାତ୍ରକୁ' ଗୌଣ କର୍ମ ଅଟେ । ସାଧାରଣତଃ କ୍ରିୟା ଦ୍ୱିକର୍ମକ ହୋଇଥିଲେ ଯେଉଁ କର୍ମଟି ଅନ୍ୟ କାରକ ସ୍ଥାନରେ ପ୍ରଯୁକ୍ତ ହୋଇଥାଏ, ତାହା ଗୌଣ ବା ଅପ୍ରଧାନ କର୍ମ ଓ ଅପରଟି ମୁଖ୍ୟ ବା ପ୍ରଧାନ କର୍ମ ।

### ବାକ୍ୟର କର୍ମ ପଦ ରୂପେ ବ୍ୟବହାର,
**Berṭe Bɔnŋ Rupna Kral (S)**
**Birnam-Baran ambɔri agana lɔman (L)**

ଯଥା:—

ସେ କାହିଁକି ବସନ୍ତି ମୁଁ ଜାଣେ ।

Anin iṭinachɔn gɔbeṭin ñen/galɔm. (S)

Anin iṭin asɔn gɔbṭe ñen gɔlɔm. (L)

ଏଠାରେ 'ସେ କାହିଁକି ବସନ୍ତି' ଏହି ବାକ୍ୟଟି 'ଜାଣେ' କ୍ରିୟାର କର୍ମ ଅଟେ ।

## କରଣ କାରକ
**Sayɔn ṭnal (S), Sɔnajɔn ajnɔb abirna (L)**

କ୍ରିୟା ସାଧନାରେ ଯେ ପ୍ରକୃଷ୍ଟ କାର୍ଯ୍ୟକାରୀ, ତାହାର କରଣ କାରକ ହୁଏ । (ସବସାର ବ୍ୟାକରଣ)

ଯଥା :— ସେ ଲଞ୍ଚରେ ସମୁଦ୍ର ପାର ହେଲେ ।

Ani poṭuaṭuŋ leŋ gunuŋ pɔɖṭin. (S)

Anin dunga lingan gɔniŋɖan pɔdeten. (L)

ମୁଁ ଯନ୍ତ୍ରାରେ ବୁଇଟି ନେଉଳ ଧରିଛୁ ।

ñen anoṭeŋ leŋ bagu kɔmpɔdi ? Yɔmlai. (S)

ñen jɔnṭranbaṭin bagu mugus yɔmlai. (L)

## ସମ୍ପ୍ରଦାନ କାରକ
**Srɔpṭin ṭnal (S), Baran Aṭnapkut (L)**

ଯାହାକୁ କୌଣସି ବସ୍ତୁ ସମ୍ୟକରୂପେ ଦାନ କରାଯାଏ, ତାହାର ସମ୍ପ୍ରଦାନ କାରକ ହୁଏ । (ସବସାର ବ୍ୟାକରଣ)

ଯଥା :— ରାଜା ଦରିଦ୍ରମାନଙ୍କୁ ଅର୍ଥଦାନ କଲେ ।

Raja କମ୍ବା ṭauṭu erdɔko mɔrɔnji lebu dana dieṭin. (S)

Rajan bɔnaginji (bɔnagimɜraŋji) adɔŋ libun batisay medenji କହ୍ଲା asoiŋman tileji. (L)

## ଅପାଦାନ କାରକ,

**Ichtiŋ tnal (S), Anɔpgɔdilbir (L)**

କିଯ୍ଵା ଦ୍ଵାରା ଗୋଟିଏ ବସ୍ତୁ ଅନ୍ୟ ବସ୍ତୁ ଠାରୁ ବିଚ୍ଛିନ୍ନ ହେବା ଜଣାଗଲେ, ଯେଉଁ ବସ୍ତୁଠାରୁ ବିଚ୍ଛିନ୍ନ ହୁଏ, ତାହାର 'ଅପାଦାନ କାରକ' ହୁଏ । (ସର୍ବସାର ବ୍ୟାକରଣ)

ଯଥା :—

ବ୍ରହ୍ମପୁତ୍ର ହିମାଳୟରୁ ନିର୍ଗତ ହୋଇଛି (ବା ବାହାରି ଅଛି)

Brɔhmɔputra Himalɔyɔseliŋ pele dako. (S)

Brɔmɔputraŋ Himalɔyɔn sariŋ duŋnaiten. (L)

ବୃକ୍ଷରୁ ଫଳ ପଡ଼ିଲା ।

Aranepsɔleŋ jɔ ? laitile galule. (S)

Aralingɔn aj galuli. (L)

ବିରାମ, ରକ୍ଷା, ମୁକ୍ତି, ଉତ୍ପତ୍ତି, ପରାଜୟ, ଆରମ୍ଭ ଇତ୍ୟାଦି ଅର୍ଥରେ ମଧ୍ୟ ଅପାଦାନ କାରକ ହୁଏ । (ସର୍ବସାର ବ୍ୟାକରଣ)

ଯଥା :—

ସମସ୍ତେ କର୍ମରୁ ବିରତ (ବା ଛୁଟି) ନେଲେ ।

Sɔbiŋji bɔnŋ sɔliŋ (baraluŋ) lulubeŋji. (S)

Sabiŋ mandra baran sɔri ? kadabliŋji. (L)

କମ୍ୱା Sɔbimɔndra baran lo-lo-nelenji. (L)

ଭଗବାନ ବିପଦରୁ ରକ୍ଷାକଲେ ।

Ketuŋ apɔṭṭi sɔleŋ dɔrɔŋna ṭuban. (S)

Keṭuŋgan tɔnuŋjiŋgan scriŋablu aiṭin. (L)

କମ୍ୱା keṭuŋgan kɔnlkɔl lingasɔriŋ

rɔb-rɔb-lɔŋṭen. (L)

ରାଜା ଶତ୍ରୁଠାରୁ ପରାଜିତ ହେଲେ ।

Raja berusaluŋ arabale. (S)

Rajan beramɔrɔn sɔriŋ are-eṭen କମ୍ୱା arili. (L)

## ଅଧିକରଣ କାରକ,

**Lasayɔn ṭnal (S), Anɔpdanebirna (L)**

କ୍ରିୟା ଯେଉଁ ସ୍ଥାନରେ ବା ଯେଉଁ ସମୟରେ ସାଧିତ ହୁଏ, ସେହି ସମୟର ବା ସ୍ଥାନର 'ଅଧିକରଣ କାରକ' ହୁଏ । (ସର୍ବସାର ବ୍ୟାକରଣ)

ଏହାର ଦୁଇ ପ୍ରକାର ବିଚାର କରାଯାଇଥାଏ । ଯେଉଁ ପଦଦ୍ୱାରା କ୍ରିୟାର ସ୍ଥାନ ବା ଅବସ୍ଥିତି ସୂଚିତ ହୁଏ, ତାହା ସ୍ଥାନାଧିକରଣ ବା ଆଧାରାଧିକରଣ ଓ କ୍ରିୟାର ସମୟକୁ ସୂଚିତ ହେଲେ ତାହା କାଳାଧିକରଣ କାରକ ହୁଏ । ପୁନଶ୍ଚ ଆଧାରାଧିକରଣ କାରକକୁ ଐକଦେଶିକ, ବୈଷୟିକ ଓ ଅଭିବ୍ୟାପକ ଭେଦରେ ତିନି ଭାଗରେ ବିଭକ୍ତ କରାଯାଇଥାଏ । ଏଠାରେ କେତେକ ଐକଦେଶିକ ଉଦାହରଣ ଦିଆଯାଇଛି ।

ମାଙ୍କଡ଼ଟି ଗଛରେ ବସିଅଛି ।

Kɔruŋ araleŋ gɔbleseṭ. (S)

Arsin aralingan gɔbeṭin. (L)

ନଦୀରେ କୁମ୍ଭୀର ବାସ କରନ୍ତି ।

Al-leŋ gɔya˜l basɔṭe. (S)

Al-lingan ṭayalaŋ dakuṭinji. (L.

ବାଘଟି ଜଙ୍ଗଲରେ ରହୁଅଛି ।

Knaga ṭɔleŋ dakuṭiŋ (S)

Kinan tulɔp le~gan dakuṭin. (L)

ଚଢ଼େଇଟି ଆକାଶରେ ଉଡ଼ୁଛି ।

ɔnṭidɔɿ rualeŋ abeŋ. (S)

ɔnṭidaŋ ruaŋlingam e~daṭin. (L)



# ବିଭକ୍ତି
## INFLECTION, Binim (S), ṭnup (L)

ବାକ୍ୟ ମଧ୍ୟରେ ଥିବା ପଦଗୁଡ଼ିକୁ ଲକ୍ଷ୍ୟ କଲେ ଦେଖାଯିବ ଯେ, ପ୍ରତ୍ୟେକ ପଦ କୌଣସି ଶବ୍ଦ ବା ଧାତୁର କେତେକ ପରିବର୍ତ୍ତନ ଦ୍ୱାରା ଗଠିତ । ଯାହା ଦ୍ୱାରା ସଂଖ୍ୟା ଓ କାରକର ପ୍ରତୀତ ଜନ୍ମେ, ତାହାକୁ 'ବିଭକ୍ତି' କହନ୍ତି । ଏ, ମାନେ, କୁ, ଙ୍କୁ, ମାନଙ୍କୁ, ମାନଙ୍କରୁ, ର, ମାନଙ୍କର, ମାନଙ୍କରେ ଏଗୁଡ଼ିକ ଶବ୍ଦ ବିଭକ୍ତି । (ସଂସାର ବ୍ୟାକରଣ) । ଆଉ କେତେକ ଶବ୍ଦ ମଧ୍ୟ ବିଭକ୍ତି ରୂପେ ବ୍ୟବହୃତ ହୋଇଥାନ୍ତି । ଯଥା—ଦ୍ୱାରା, ଦେଇ, କର୍ତ୍ତୃକ, ଠାରୁ, ଠାରେ ଇତ୍ୟାଦି । 'ସଂସାର ବ୍ୟାକରଣ' ପୁସ୍ତକରେ ଏଗୁଡ଼ିକୁ 'ବିଭକ୍ତି ସୂଚକ ଅବ୍ୟୟ' କୁହାଯାଇଛି ।

ବିଭକ୍ତି ସାଧାରଣତଃ ୭ ପ୍ରକାରର, ଯଥା:—ପ୍ରଥମା, ଦ୍ୱିତୀୟା, ତୃତୀୟା, ଚତୁର୍ଥୀ, ପଞ୍ଚମୀ, ଷଷ୍ଠୀ ଓ ସପ୍ତମୀ । ଏକବଚନ ଓ ବହୁବଚନ ଭେଦରେ ବିଭକ୍ତିର ଆକାର ନିମ୍ନରେ ପ୍ରଦାନ କରାଯାଉଛି ।

| ବିଭକ୍ତି<br>Binim (S)<br>ṭnup (L) | ଏକବଚନ<br>Bɔbir (S)<br>Abɔye Anamɔṭ (L) | ବହୁବଚନ<br>Labir (S)<br>Aṭeŋ Aramɔṭ (L) |
|---|---|---|
| ପ୍ରଥମା:-<br>Pɔrnim (S)<br>Amɔŋ (L) | — | ଏ, ମାନ, ମାନେ, ଗୁଡ଼ିକ, ଗୁଡ଼ାକ<br>kɔn aninji, ji,<br>ki-iŋ (S)<br>Aniŋji, jakiŋ,<br>kan kuṭub (L) |
| ଦ୍ୱିତୀୟା<br>Bɔrnim (S)<br>Bagu (L) | କୁ, ଙ୍କୁ, କ, ଙ୍କ, ଠାରୁ,<br>—ŋ (S)<br>କୁ, ଙ୍କୁ-aŋ (L),<br>କ, ଙ୍କ, pɔ (L),<br>ଠାରୁ- ṭiṭin (L) | ଙ୍କୁ, ମାନଙ୍କୁ, ମାନଙ୍କଠାରୁ<br>—Jaŋ, Jabɔtu (S)<br>Jaṭɔŋ<br>Aŋ (ଙ୍କୁ), ମାନଙ୍କୁ (aniŋji),<br>ମାନଙ୍କଠାରୁ (Aniŋjisɔriŋ (L) |

